# DWITIYAPATH

OR

## ORIYA READER No. II

BY

**SITANATH RAY.**

# ଦ୍ୱିତୀୟପାଠ ।

ଶ୍ରୀ ସୀତାନାଥ ରାୟ କର୍ତ୍ତୃକ ସଙ୍କଳିତ ।

ପରିବର୍ତ୍ତିତ ତୃତୀୟ ସଂସ୍କରଣ ।

ଶ୍ରୀ ନିତ୍ୟାନନ୍ଦ ସାହୁଙ୍କ ଦ୍ୱାରା ପ୍ରକାଶିତ ।

ବିଦ୍ୟାମନ୍ଦିର—କଟକ



PRINTED AT THE EDWARD PRESS
BY S. N. MOHAMMAD
SHAIKH BAZAR
**CUTTACK.**
1911.

Two Annas. ମୂଲ୍ୟ ଦୁଇପଣ ।

## ଜଳ ଓ ବାୟୁ ।

ମନୁଷ୍ୟ, ପଶୁ, ପକ୍ଷୀ, ମତ୍ସ୍ୟ, କୀଟ, ପତଙ୍ଗ, ବୃକ୍ଷ, ଲତା, ତୃଣ ପ୍ରଭୃତି ସମସ୍ତ ସଜୀବ ପଦାର୍ଥର ଜଳ ଅତ୍ୟନ୍ତ ଆବଶ୍ୟକ ଅଟେ । ଯେଉଁ ସ୍ଥାନରେ ଜଳ ନାହିଁ ସେ ସ୍ଥାନରେ ପ୍ରାଣିମାନେ ରହି ପାରନ୍ତି ନାହିଁ କି ସେଠାରେ କୌଣସି ଉଦ୍ଭିଦ ସୁଦ୍ଧା ଜାତ ହୁଏ ନାହିଁ । କ୍ଷୁଧା ସମୟରେ ଅମ୍ଭମାନଙ୍କୁ କିଛି ଖାଇବାକୁ ନ ମିଳିଲେ ଯେତେ କଷ୍ଟ ହୁଏ, ତୃଷ୍ଣା ସମୟରେ ଜଳ ପିଇବାକୁ ନ ମିଳିଲେ ତହିଁରୁ ବଳି କଷ୍ଟ ହୁଏ । ପରମେଶ୍ୱର କୃପା କରି ଅମ୍ଭମାନଙ୍କୁ ପ୍ରଚୁର ପରିମାଣରେ ଜଳ ପ୍ରଦାନ କରିଅଛନ୍ତି । ଯେଉଁ ସ୍ଥାନରେ ନଦୀ, ହ୍ରଦ ପ୍ରଭୃତି ନାହିଁ, ସେହି ସ୍ଥାନରେ ଲୋକେ ପୋଖରୀ ଓ କୂଅ ଖୋଳି ତାହାର ଜଳ ବ୍ୟବହାର କରନ୍ତି ।

ଅମ୍ଭମାନଙ୍କର ବାୟୁ ଯେପରି ଆବଶ୍ୟକ ଅନ୍ୟ କୌଣସି ପଦାର୍ଥ ସେପରି ନୁହେ । ଅମ୍ଭେମାନେ ଭୋଜନ ଓ ଜଳ ଅଭାବରେ କେତେକ ଦିନ ବଞ୍ଚି ପାରୁଁ; ମାତ୍ର ବାୟୁ ଅଭାବରେ ମୁହୂର୍ତ୍ତ ମଧ୍ୟରେ ଶ୍ୱାସରୁଦ୍ଧ ହୋଇ ମରିଯିବୁଁ । ଜଳ ମଧ୍ୟରେ ମତ୍ସ୍ୟ ପ୍ରଭୃତି ଯେଉଁ ପ୍ରାଣିମାନେ ବାସ କରନ୍ତି ସେମାନଙ୍କର ମଧ୍ୟ ବାୟୁ ଆବଶ୍ୟକ ହୁଏ । ଜଳ ସଙ୍ଗେ ଯେଉଁ ବାୟୁ ଥାଏ ସେମାନେ ତାହା ଗ୍ରହଣ କରି ବଞ୍ଚନ୍ତି । ପରମେଶ୍ୱର ଅମ୍ଭମାନଙ୍କୁ ପ୍ରଚୁର ପରିମାଣରେ ବାୟୁ ପ୍ରଦାନ କରିଅଛନ୍ତି । ଅମ୍ଭେମାନେ ବାୟୁରାଶି ମଧ୍ୟରେ ବୁଡ଼ି ରହିଅଛୁଁ । ଏଣୁ ଅମ୍ଭମାନଙ୍କର କୌଣସି ସମୟରେ ବାୟୁର ଅଭାବ ହୁଏ ନାହିଁ । ଜଳପରି ବାୟୁ ଆଖିରେ ଦେଖାଯାଏ ନାହିଁ, ଦେହରେ ଲାଗିଲେ ଜଣାଯାଏ । ବାୟୁ ପ୍ରବଳବେଗରେ ବହିଲେ ତାହାକୁ ବତାସ ବା ତୋଫାନ କହନ୍ତି ।

---

## ଈଶ୍ୱର ସ୍ତୁତି ।

ତୁ ଆତ୍ମା ସର୍ବଭୂତେ ପୂରି, ବସୁ ଗୁପତ ରୂପ ଧରି ।
ସକଳ ଦେଖୁ ତୁ ନୟନେ, ତୋତେ ନ ଦେଖେ ସର୍ବଜନେ ।
କେ ତୋତେ ତ୍ରିଭୁବନେ ଜାଣେ, କେ ଅବା ସୂକ୍ଷ୍ମରେଣୁ ଗଣେ ।
ତୁ ପ୍ରଭୁ ଜଗତଜୀବନ, ଦରିଦ୍ରପ୍ରାଣିଙ୍କର ଧନ ।
ଅଶେଷ ଭୁବନ-କାରଣ, ତୁ ନାଥ ଜଗତତାରଣ ।

ଯାଠାରେ ହେଉ ତୁ ସଦୟ, ଜ୍ଞାନ ତା ହୃଦରୁ ଉଦୟ ।
ତୁ ଆତ୍ମା ସର୍ବଜୀବ ପତି, ସୁଗୁରୁ–ଜ୍ଞାନ–ଗମ୍ୟ ଗତି ।
ସାଧୁଙ୍କୁ ଦିଶୁ ତୁ ନିର୍ମଳ, ଖଳଲୋଚନେ ଯେହ୍ନେ କାଳ ।
ତୋହର ଆଦି ଅନ୍ତ ନାହିଁ, ପ୍ରକୃତି ତୋତେ ନ ଜାଣଇ ।
ଭୂତ ଭବିଷ୍ୟ ବର୍ତ୍ତମାନ, ସୃଜନ ତୋର ଭଗବାନ ।
ତୋହର ଶତ୍ରୁ ମିତ୍ର ନାହିଁ ତୋର ତିଆଣ ସର୍ବଦେହୀ ।
ବ୍ରହ୍ମାଣ୍ଡ ମାଳ ମାଳ ହୋଇ, ତୋ ଲୋମକୂପେ ବିରାଜଇ ।
ମୋ ଦେହେ ଜାଳି ଜ୍ଞାନ–ଦୀପ, ଅଜ୍ଞାନ ଖଣ୍ଡ ବିଶ୍ୱରୂପ ।

---

## ପ୍ରାଣୀ ।

ପ୍ରାଣିମାନେ ଚାରିଭାଗରେ ବିଭକ୍ତ ଅଟନ୍ତି; ଯଥା ଅସ୍ଥିମାନ, କୋମଳାଙ୍ଗ, ଗ୍ରନ୍ଥିଳ ଓ ଆବରକାୟ । ଯେଉଁମାନଙ୍କ ଦେହରେ ହାଡ଼ ଅଛି ସେମାନଙ୍କୁ ଅସ୍ଥିମାନ ପ୍ରାଣୀ କହନ୍ତି । ଯେମନ୍ତ ମନୁଷ୍ୟ, ଗୋରୁ, ଘୋଡ଼ା, ପକ୍ଷୀ, ପ୍ରଭୃତି । ଯେଉଁମାନଙ୍କ ଶରୀର ମଧ୍ୟରେ ହାଡ଼ ନାହିଁ ସେମାନଙ୍କୁ କୋମଳାଙ୍ଗ ପ୍ରାଣୀ କହନ୍ତି । ଯେମନ୍ତ ଗେଣ୍ଡା, ଶାମୁକ ପ୍ରଭୃତି । ଯେଉଁ ପ୍ରାଣୀର ଦେହ ଗଣ୍ଠି ହେଲା ପରି ଭିନ୍ନ ଭାଗରେ ବିଭକ୍ତ ତାହାକୁ ଗ୍ରନ୍ଥିଳ କହନ୍ତି; ଯେମନ୍ତ କଙ୍କଡ଼ା, ବିଛା, ପିମ୍ପୁଡ଼ି ପ୍ରଭୃତି । ଯେଉଁ ପ୍ରାଣିର ଅଙ୍ଗମାନ ଶଗଡ଼ ଚକର ଅର ପରି ଚାରିଆଡ଼େ ବାହାରିଥାଏ, ସେମାନଙ୍କୁ ଆବରକାୟ କହନ୍ତି । ସମୁଦ୍ରରେ ନାନା ପ୍ରକାର ଆବରକାୟ ପ୍ରାଣୀ ଅଛନ୍ତି ।

ଉପରୋକ୍ତ ଚାରିଭାଗର ଏକ ଏକ ଭାଗ ପୁଣି କେତେ ଶ୍ରେଣୀରେ ବିଭକ୍ତ ଅଟେ । ଯେମନ୍ତ ଅସ୍ଥିମାନ ପ୍ରାଣିମାନେ ସ୍ତନ୍ୟପାୟୀ । ପକ୍ଷୀ, ମତ୍ସ୍ୟ ପ୍ରଭୃତି କେତେ ଭାଗରେ ବିଭକ୍ତ ଅଟନ୍ତି । ପୁଣ ସ୍ତନ୍ୟପାୟୀ ପ୍ରାଣୀ ଦ୍ୱିହସ୍ତ, ଚତୁର୍ହସ୍ତ, ସକ୍ଷୁର ପ୍ରଭୃତି ଶ୍ରେଣୀରେ ବିଭକ୍ତ । ମନୁଷ୍ୟମାନେ ଦ୍ୱିହସ୍ତ, ବାନର ଓ ବଣମନୁଷ୍ୟ ଚତୁର୍ହସ୍ତ, ଏବଂ ଗୋରୁ ଓ ଘୋଡ଼ାପ୍ରଭୃତି ସକ୍ଷୁର ପ୍ରାଣୀ ଅଟନ୍ତି ପୁଣି ମନୁଷ୍ୟମାନେ କେତେ ଜାତିରେ ବିଭକ୍ତ ହୋଇଅଛନ୍ତି ।

ପୃଥିବୀରେ କେତେ ଜୀବ ଅଛନ୍ତି ତାହା କେହି ନିର୍ଣ୍ଣୟ କରି ପାରିବେ ନାହିଁ । କୀଟାଣୁ ନାମରେ ଏକପ୍ରକାର ଜୀବ ଅଛନ୍ତି ତାହା ଖାଲିଆଖିରେ ଦେଖା ଯାନ୍ତି ନାହିଁ ।

ଏମାନେ ଏଡ଼େ କ୍ଷୁଦ୍ର ଯେ ଠୋପାଏ ପାଣିରେ ଲକ୍ଷ ଲକ୍ଷ କୀଟାଣୁ ରହି ପାରନ୍ତି । ନିମ୍ନରେ କେତେକ ପ୍ରକାର କୀଟାଣୁର ଚିତ୍ର ପ୍ରଦତ୍ତ ହେଲା ।



ଜଳରେ, ବାୟୁରେ, ଖାଦ୍ୟାଦିରେ, ଜୀବଶରୀରରେ ଅସଂଖ୍ୟ କୀଟାଣୁ ରହିଅଛନ୍ତି । ଆମ୍ଭେମାନେ ଥରେ ନିଶ୍ୱାସ ନେଲେ, କିମ୍ବା ଗିଲାସେ ପାଣି ପିଇଲେ ଲକ୍ଷ ଲକ୍ଷ କୀଟାଣୁ ଆମ୍ଭମାନଙ୍କ ଶରୀର ମଧ୍ୟରେ ପ୍ରବେଶ କରୁଅଛନ୍ତି । ଏହି କୀଟାଣୁମାନଙ୍କ ହେତୁ ଝାଡା-ଜର, ପ୍ଲେଗ ପ୍ରଭୃତି ରୋଗ ଉତ୍ପନ୍ନ ହୁଏ । ଭିନ୍ନ ଭିନ୍ନ ରୋଗର କୀଟାଣୁ ଭିନ୍ନ ଭିନ୍ନ ପ୍ରକାର ଅଟେ ।

## ମନୁଷ୍ୟ ।

ପ୍ରାଣିମାନଙ୍କ ମଧ୍ୟରେ ମନୁଷ୍ୟ ସମସ୍ତଙ୍କଠାରୁ ଶ୍ରେଷ୍ଠ ଅଟେ । ପୃଥିବୀରେ ଯେତେ ପ୍ରକାର ପ୍ରାଣୀ ଅଛନ୍ତି ମନୁଷ୍ୟ ସମସ୍ତଙ୍କୁ ଆୟତ୍ତ କରିପାରେ । ଭିନ୍ନ୨ ଦେଶରେ ଭିନ୍ନ୨ ବର୍ଣ୍ଣର ମନୁଷ୍ୟ ଅଛନ୍ତି, ବିଲାତର ମନୁଷ୍ୟମାନେ ଶ୍ୱେତକାୟ ଅଟନ୍ତି । ଏ ଦେଶରେ ବିଲାତର ଲୋକଙ୍କୁ ସାହେବ ବୋଲି କହନ୍ତି । ଆଫ୍ରିକା ବୋଲି ଗୋଟିଏ ବଡ଼ ଦେଶ ଅଛି । ଆଫ୍ରିକାର ଲୋକମାନେ ଦେଖିବାକୁ ଅତ୍ୟନ୍ତ କୃଷ୍ଣବର୍ଣ୍ଣ । ଚୀନଦେଶର ଲୋକମାନେ ପୀତବର୍ଣ୍ଣ ଏବଂ ଅମେରିକାର ଅସଭ୍ୟ ଲୋକମାନେ ଲୋହିତବର୍ଣ୍ଣ ହୁଅନ୍ତି । ଓଡ଼ିଆ, ବଙ୍ଗାଳୀ, ପଶ୍ଚିମା, ସାନ୍ତାଳ ଓ କନ୍ଧମାନେ ଯେପରି ଭିନ୍ନ୨ ଭାଷାରେ କଥା କହନ୍ତି, ସେହିପରି ଭିନ୍ନ୨ ଦେଶର ଲୋକମାନେ ଭିନ୍ନ୨ ଭାଷାରେ କଥା କହନ୍ତି । ଭାଷା ପରି ଲୁଗା ଏବଂ ଖାଇବା ପଦାର୍ଥ ମଧ୍ୟ ଏକ୨ ଦେଶରେ ଏକ୨ ପ୍ରକାର ବ୍ୟବହୃତ ହୁଏ । ଆଫ୍ରିକା, ଅଷ୍ଟ୍ରେଲିଆ ପ୍ରଭୃତି ମହାଦେଶରେ କୌଣସି୨ ଜାତି ବୃକ୍ଷର ବକ୍କଲ, ପତ୍ର; କେହି ଅବା ପଶୁର ଚର୍ମ୍ମ ପିନ୍ଧନ୍ତି; କୌଣସି୨ ଜାତି କିଛି ପିନ୍ଧନ୍ତି ନାହିଁ । କୌଣସି୨ ଅସଭ୍ୟ ଜାତି ମନୁଷ୍ୟ, ହାତୀ, ଘୋଡ଼ା, ବାଘ, ଭାଲୁ, କୁମ୍ଭୀର, ସାପ, ବେଙ୍ଗ, ଝିଣ୍ଟିକା ପ୍ରଭୃତି ପ୍ରାୟ ସମସ୍ତ ପ୍ରାଣିର ମାଂସ ଆହାର କରନ୍ତି । କୌଣସି୨ ଅସଭ୍ୟ ଜାତି ଅନ୍ୟ ଜାତିକୁ ଯୁଦ୍ଧରେ ଜୟ କରି ଶତ୍ରୁମାନଙ୍କ ଶବ ଅଗ୍ନିରେ ପୋଡି ଖାନ୍ତି । କୌଣସି୨ ଅସଭ୍ୟ ଜାତି କଞ୍ଚାମାଂସ ଖାନ୍ତି ।

---

## ପଶୁ ।

ପଶୁମାନେ ଗ୍ରାମ୍ୟ ଓ ବନ୍ୟ ଏହି ଦୁଇ ଶ୍ରେଣୀରେ ବିଭକ୍ତ । ଗୋରୁ, ମହିଷ, ଛେଳି, ମେଣ୍ଢା, କୁକୁର, ବିରାଡ଼ି, ଘୋଡ଼ା, ଗଧ, ଘୁଷୁରି ପ୍ରଭୃତି ଗ୍ରାମ୍ୟଜନ୍ତୁ ଅଟନ୍ତି । ସିଂହ, ବାଘ, ଭାଲୁ, ହାତୀ, ଠେକୁଆ, ହରିଣ, ବିଲୁଆ, କଲୁଆ, ବାନର ପ୍ରଭୃତିଙ୍କୁ ବନ୍ୟଜନ୍ତୁ କହନ୍ତି । ଭାରତବର୍ଷ ଏବଂ ଅନ୍ୟାନ୍ୟ ଦେଶରେ ଅନେକ ଅରଣ୍ୟମହିଷ ଅଛନ୍ତି । ହିମାଳୟ ପର୍ବ୍ବତରେ ଦୁଇ ଜାତୀୟ ବନ୍ୟମେଷ ଏବଂ ଏକ ଜାତୀୟ ବନ୍ୟଛାଗ ଅଛନ୍ତି । କୌଣସି୨ ଦେଶରେ ବନ୍ୟଗଧ ଏବଂ ବନ୍ୟଘୋଟକ ଅଛନ୍ତି; ମାତ୍ର ଏମାନଙ୍କୁ ଧରିଲେ ପୋଷା ମାନନ୍ତି ନାହିଁ । ଏ ଦେଶର କୌଣସି୨ ବନରେ ବନ୍ୟଗୋରୁ


ମେଣ୍ଢା ।


ବଗଡ଼ ।


ଘୁଷୁଡ଼ି ।


କୁକ୍କୁର ।


ହାତୀ ।


ବାଘ ।


ସିଂହ ।

ଅଛନ୍ତି । ପଶୁମାନଙ୍କ ମଧ୍ୟରେ କୌଣସି୨ ପଶୁ ଉଦ୍ଭିଦ, କୌଣସି୨ ପଶୁ ମାଂସ, କୌଣସି୨ ପଶୁ ମାଂସ ଓ ଉଦ୍ଭିଦ ଉଭୟ ପଦାର୍ଥ ଭୋଜନ କରନ୍ତି । ଗୋରୁ, ମହିଷ, ଘୋଡ଼ା, ଗଧ, ଘୁଷୁଡ଼ି, ଛେଳି ମେଣ୍ଢା କେବଳ ଉଦ୍ଭିଦ ଖାଇ ବଞ୍ଚନ୍ତି । ସିଂହ, ବାଘ, ଗଧିଆ ବିଲୁଆ ପ୍ରଭୃତି ପଶୁମାନେ କେବଳ ମାଂସ ଖାନ୍ତି । ଭାଲୁ, ବଗଡ଼, କୁକୁର, ଭଲୁଆ ପ୍ରଭୃତି ମାଂସ ଓ ଉଦ୍ଭିଦ ଉଭୟ ପଦାର୍ଥ ଭୋଜନ କରନ୍ତି । କୌଣସି୨ ପଶୁ ଏକା, କୌଣସି୨ ପଶୁ ଦଳବଦ୍ଧ ହୋଇ ବାସ କରନ୍ତି । ବନ୍ୟଘୋଟକ, ହରିଣ, ବିଲୁଆ, ହାତୀ, ବାନର ପ୍ରଭୃତି ପଶୁ ଏକା ରହନ୍ତି ନାହିଁ । କେତେକ ବନ୍ୟ ଓ ଗ୍ରାମ୍ୟ-ପଶୁ ମନୁଷ୍ୟଙ୍କ ଖାଦ୍ୟ ଅଟନ୍ତି । ଓଟ, ଘୋଡ଼ା, ଗଧ, ବଳଦ, ଓ ମହିଷକୁ ଭାରବାହକ ପଶୁ କହନ୍ତି । ପଶୁଲୋମରୁ ପଶମୀ ବସ୍ତ୍ର, ପଶୁଚର୍ମ୍ମରୁ ଜୋତା ପ୍ରଭୃତି ହୁଏ ।

---

## ପକ୍ଷୀ ।

ପକ୍ଷିମାନେ ଅଣ୍ଡା ପ୍ରସବ କରନ୍ତି, ସେହି ଅଣ୍ଡାରୁ ଶାବକ ଜନ୍ମ ହୁଏ, ଏଣୁ ଏମାନଙ୍କୁ ଅଣ୍ଡଜ କହନ୍ତି । ପକ୍ଷିମାନଙ୍କ ମଧ୍ୟରେ କେତେକ ପକ୍ଷୀ ମାଂସ, କେତେକ ପକ୍ଷୀ ଉଦ୍ଭିଦ, କେତେକ ପକ୍ଷୀ ମାଂସ ଓ ଉଦ୍ଭିଦ ଉଭୟ ଆହାର କରନ୍ତି । ସାରସ, ସାଗୁଣା, ସଞ୍ଚାଣ, ହାଡ଼ଗିଲା, ଚିଲ, ଗେଣ୍ଡାଲିଆ ପ୍ରଭୃତିର ଆହାର କେବଳ ମାଂସ ଅଟେ ।


ବଗ ।


ପାର ।


କୁକୁଡ଼ା ।


ହଂସ ।

ତୋତା, ପାର, କୋଚିଲାଖାଇ, କୋକିଳ ପ୍ରଭୃତି ଉଦ୍ଭିଦ ଖାଇ ବଞ୍ଚନ୍ତି । ବଣି, କାଉ, ହଂସ, ଡାହୁକ, ମୟୂର, କୁକୁଡ଼ା, ଶ୍ୟାମା ପ୍ରଭୃତି ମାଂସ ଓ ଉଦ୍ଭିଦ ଉଭୟ ଆହାର କରନ୍ତି । ପକ୍ଷିମାନେ ପକ୍ଷ ସାହାଯ୍ୟରେ ଆକାଶରେ ଉଡି ପାରନ୍ତି । ହଂସ, ବଗ, ସାରସ, ପାଣିକୁଆ ପ୍ରଭୃତିଙ୍କୁ ଜଳଚର ପକ୍ଷୀ କହନ୍ତି । ହଂସ ପ୍ରଭୃତି ଜଳଚର ପକ୍ଷୀ ଜଳରେ ଉତ୍ତମ ପହଁରି ପାରନ୍ତି ।

ପକ୍ଷିମାନଙ୍କଦ୍ୱାରା ମନୁଷ୍ୟମାନଙ୍କର ଅନେକ ଉପକାର ହୁଏ । କେତେକ ପକ୍ଷୀ ମନୁଷ୍ୟମାନଙ୍କର ଖାଦ୍ୟ ଅଟନ୍ତି । କେତେକ ପକ୍ଷିଙ୍କ ପରରେ କଲମ, ଗଦି ପ୍ରଭୃତି ହୁଏ । ଅଧିକାଂଶ ପକ୍ଷୀ ଅନିଷ୍ଟକାରୀ କୀଟପତଙ୍ଗମାନଙ୍କୁ ଧରି ଖାନ୍ତି । ସାଗୁଣାମାନେ ମୃତମନୁଷ୍ୟ ଓ ପଶୁର ଶବ ଭକ୍ଷଣ କରନ୍ତି ; ଏଣୁ ଶବ ପଚାଯାଇ ଦୁର୍ଗନ୍ଧଯୁକ୍ତ ହୋଇ ନ ପାରେ । ସାରସ ଓ ହାଡ଼ଗିଲା ପକ୍ଷୀ କ୍ଷୁଦ୍ର୨ ସାପକୁ ଦେଖିଲକ୍ଷଣି ଖାଇଦିଅନ୍ତି ।

ଏ ଦେଶରେ କେହି୨ ବଣି, ଶାରୀ, ତୋତା, ଚନ୍ଦନା, ପ୍ରଭୃତି ପାଳି ପଢ଼ାନ୍ତି ।



ଆମେରିକା ଦେଶରେ ହରବୋଲି ବୋଲି ଏକପ୍ରକାର ପକ୍ଷୀ ଅଛନ୍ତି । ଏମାନେ ଯେଉଁ ପ୍ରକାର ଶବ୍ଦ ଶୁଣନ୍ତି ସେହି ପ୍ରକାର ଶବ୍ଦ ଉଚ୍ଚାରଣ କରିପାରନ୍ତି । ପାର୍ଶ୍ୱରେ ହରବୋଲି ପକ୍ଷୀର ଚିତ୍ର ଦିଆ ହୋଇଅଛି । ଅଧିକାଂଶ ପକ୍ଷୀ ପ୍ରତିବର୍ଷ ବସା ନିର୍ମାଣ କରି ଶାବକମାନଙ୍କୁ ପାଳନ କରନ୍ତି । ଶାବକମାନଙ୍କ ଉଡ଼ିବାର ଶକ୍ତି ହେଲେ ବସା ତ୍ୟାଗ କରନ୍ତି । କୋକିଳ, ଶ୍ୟାମା, ପାପିଆ ପ୍ରଭୃତି ପକ୍ଷୀଙ୍କୁ ସଙ୍ଗୀତକାରୀ ପକ୍ଷୀ କହନ୍ତି । ଏମାନଙ୍କ ସ୍ୱର ଅତ୍ୟନ୍ତ ମଧୁର । ପ୍ରତିବର୍ଷ ପକ୍ଷିମାନଙ୍କ ପୁରାତନ ପର ଝଡି ଯାଇ ନୂତନ ପର ହୁଏ । କୌଣସି ପକ୍ଷୀ ବର୍ଷକରେ ଥରେ, କୌଣସି ପକ୍ଷୀ ଦୁଇଥର, କୌଣସି ପକ୍ଷୀ ଅବା ତିନି ଚାରି ଥର ଡିମ୍ବ ପ୍ରସବ କରନ୍ତି ।



ପାର୍ଶ୍ୱରେ ପେଙ୍ଗୁଇନ୍ ପକ୍ଷିର ଚିତ୍ର ଦିଆ ହୋଇଅଛି । ଏମାନଙ୍କ ଡେଣାରେ ପର ହୁଏ ନାହିଁ, ଏଣୁ ଏମାନେ ଉଡ଼ି ପାରନ୍ତି ନାହିଁ । ମାତ୍ର ଏମାନେ ଅତ୍ୟନ୍ତ ଦ୍ରୁତବେଗରେ ପହଁରି ପାରନ୍ତି । ଏମାନେ କୂଳରେ ଥିବା ବେଳେ କୌଣସି ଶତ୍ରୁ ଉପସ୍ଥିତ ହେଲେ, ଦ୍ରୁତବେଗରେ ପାଣିରେ ପଡ଼ି ପହଁରି ମୁହୂର୍ତ୍ତ ମଧ୍ୟରେ ଦୂରକୁ ଚାଲି ଯାଇ ଅଦୃଶ୍ୟ ହୁଅନ୍ତି ।

---

ସରୀସୃପ ।



ଏଣ୍ଡୁଅ ।



କଚ୍ଛପ ।

କୁମ୍ଭୀର, ସର୍ପ, ଗୋଧି, ଏଣ୍ଡୁଅ, ଚମ୍ପେଇନେଉଳ, କଚ୍ଛପ, ବେଙ୍ଗ ପ୍ରଭୃତିଙ୍କୁ ସରୀସୃପ କହନ୍ତି । ସରୀସୃପମାନେ ଅଣ୍ଡଜ ଅଟନ୍ତି । ସରୀସୃପମାନଙ୍କ ମଧ୍ୟରେ ସାପ ଓ କୁମ୍ଭୀର ଅତ୍ୟନ୍ତ ଭୟାନକ ଅଟନ୍ତି । ଯେଉଁ ସାପର ଫଣା ଅଛି ସେମାନଙ୍କ କାମୁଡ଼ାରେ ଅନେକ ମନୁଷ୍ୟ ଓ ପଶୁ ନଷ୍ଟ ହୁଅନ୍ତି । ବଡ଼ବଡ଼ ସାପର ବିଷ ନାହିଁ ; ଏମାନେ ପଶୁମାନଙ୍କ ଦେହରେ ଗୁଡ଼ାଇ ହୋଇଯାଇ ସେମାନଙ୍କ ପ୍ରାଣ ନାଶ କରନ୍ତି । ଯେଉଁ ଦେଶ ଅଧିକ ଶୀତଳ ସେହି ଦେଶରେ ସାପମାନେ ରହି ପାରନ୍ତି ନାହିଁ । ଗ୍ରୀଷ୍ମପ୍ରଧାନ ଦେଶରେ ନାନାପ୍ରକାର ସାପ ଅଛନ୍ତି । ଶୀତଦିନରେ ଏ ଦେଶରେ ସାପ ପ୍ରାୟ ଦେଖା ଯାନ୍ତି ନାହିଁ । ପୋଖରୀମାନଙ୍କରେ ଥିବା ସାନ କୁମ୍ଭୀରମାନେ ମାଛ ଖାଇ ବଞ୍ଚନ୍ତି । ମାତ୍ର ନଦୀମାନଙ୍କରେ ଥିବା ବଡ଼ କୁମ୍ଭୀରମାନଙ୍କଦ୍ୱାରା ପ୍ରତିବର୍ଷ ଅନେକ ମନୁଷ୍ୟ ଓ ପଶୁ ନଷ୍ଟ ହୁଅନ୍ତି । ମନୁଷ୍ୟପଲ ଯେତେବେଳେ ନଦୀରେ ପଡ଼ୁଥାନ୍ତି କୁମ୍ଭୀର ସେମାନଙ୍କ ପାଖକୁ ଯାଏ ନାହିଁ ; ମାତ୍ର ଗୋଟିଏ ମନୁଷ୍ୟ ପଡ଼ିଥିଲେ ତାହାକୁ ଧରି ମାରି ପକାଏ । ଏ ଦେଶର କେଳାମାନେ ଏବଂ ଅଫ୍ରିକା ଓ ଶ୍ୟାମଦେଶର ଲୋକେ କୁମ୍ଭୀରମାଂସ ଖାନ୍ତି ।

ଏଣ୍ଡୁଅ ବେଳେ୨ ଆପଣାର ବର୍ଣ୍ଣ ପରିବର୍ତ୍ତନ କରେ । ଏଣ୍ଡୁଅ କୀଟପତଙ୍ଗ ଧରି ଭୋଜନ କରେ । ଏଣ୍ଡୁଅ ଯେତେବେଳେ କୀଟ ପତଙ୍ଗ ଧରିବା ଲାଗି ଘାସ କିମ୍ବା ପତ୍ର ମଧ୍ୟରେ ଲୁଚିଥାଏ ତେତେବେଳେ ହରିଦ୍ବର୍ଣ୍ଣ ଧାରଣ କରେ । ଏଣ୍ଡୁଅ ଯେଉଁ ଡାଳ କିମ୍ବା ପଦାର୍ଥ ଉପରେ ଥାଏ ସେହି ଡାଳ ଅବା ପଦାର୍ଥର ବର୍ଣ୍ଣ ଧାରଣ କରେ । କୀଟ ପତଙ୍ଗ ଜାଣି ନ ପାରି ପାଖକୁ ଆସିଲେ ସେମାନଙ୍କୁ ଧରି ଖାଏ ।

ନାନାଜାତିର କଇଁଛ ଅଛନ୍ତି । ଆମେରିକା ମହାଦେଶରେ ଯେପରି ବଡ଼ କଇଁଛ ଅଛନ୍ତି ଅନ୍ୟ କୌଣସି ଦେଶରେ ସେପରି ନାହାନ୍ତି । ବୃହତ୍ ସାମୁଦ୍ରିକ କଚ୍ଛପର ଦୈର୍ଘ୍ୟ ଛଅହାତ ଏବଂ ଓଜନ ୨୨ ମହଣରୁ ଅଧିକ ହୁଏ । ସାମୁଦ୍ରିକ କଚ୍ଛପ ପରି ସ୍ଥଳଚର କଚ୍ଛପମାନେ ବୃହତ୍ ହୁଅନ୍ତି ନାହିଁ ।

ଏ ଦେଶରେ ତିନି ଚାରି ଜାତିର ବେଙ୍ଗ ଦେଖାଯାନ୍ତି । ବ୍ରାହ୍ମଣୀଆ ବେଙ୍ଗ ଅନ୍ୟାନ୍ୟ ବେଙ୍ଗଠାରୁ ବଡ଼ ହୁଅନ୍ତି । ପିଠିରେ ପୈତା ପରି ଦାଗ ଥିବାରୁ ଏମାନଙ୍କୁ ବ୍ରାହ୍ମଣୀଆ ବେଙ୍ଗ କହନ୍ତି । କାଠବେଙ୍ଗ ଗଛ ପ୍ରଭୃତିରେ ରହନ୍ତି । ଏମାନେ ଏକ ଗଛରୁ ଅନ୍ୟ ଗଛକୁ ଉଡ଼ି ଗଲା ପରି ଯାନ୍ତି । ଫ୍ରାନ୍ସ, ଚୀନ ଓ ବ୍ରହ୍ମଦେଶର ଲୋକେ ବେଙ୍ଗମାଂସକୁ ଅତ୍ୟନ୍ତ ସ୍ୱାଦୁ ବୋଲି ଜ୍ଞାନ କରନ୍ତି ।

---

## କୀଟ ପତଙ୍ଗ ।

ଉଇ, ପିମ୍ପୁଡ଼ି, ଉକୁଣି, ଓଡ଼ସ, ମାକଡ଼ସା, ଜିଆ, ଜୋକ ପ୍ରଭୃତିଙ୍କୁ କୀଟ କହନ୍ତି । ପ୍ରଜାପତି, ଝିଣ୍ଟିକା, ଜୁଳୁଜୁଳିଆ ପୋକ, ମାଛି, ମଶା, ବିରୁଡ଼ି, ଭ୍ରମର ପ୍ରଭୃତିଙ୍କୁ ପତଙ୍ଗ କହନ୍ତି । ପତଙ୍ଗମାନଙ୍କ ପକ୍ଷ ଅଛି, ତେଣୁ ସେମାନେ ଉଡ଼ି ପାରନ୍ତି; କୀଟମାନେ ଉଡ଼ି ପାରନ୍ତି ନାହିଁ ; ଅନେକ କୀଟ ଓ ପତଙ୍ଗର ଶରୀର ତିନି ଭାଗରେ ବିଭକ୍ତ । କୀଟ ଏବଂ ପତଙ୍ଗ ମଧ୍ୟରେ ପ୍ରଜାପତି ସବୁଠାରୁ ଅଧିକ ସୁନ୍ଦର ଅଟନ୍ତି । ପ୍ରାୟ ସମସ୍



ପ୍ରକାର ଭିନ୍ନ ଜାତିର ପ୍ରଜାପତି ଅଛନ୍ତି । ପ୍ରଜାପତିମାନେ ଡିମ୍ବରୁ ଜନ୍ମ ହେଲେ ସମ୍ଭାଳୁଆ ପରି ଦିଶନ୍ତି । ସେତେବେଳେ ସେମାନଙ୍କ ଦେହରେ ପକ୍ଷ ହୋଇ ନ ଥାଏ । ଏହି ପୋକ କେତେକ ଦିନ ଗଛର ପତ୍ର ଖାଇ ବଞ୍ଚନ୍ତି । ତହୁଁ ଉତ୍ତାରୁ ଖୋଳପା ଅବା ବସା କରି ସେଥି ମଧ୍ୟରେ ରହନ୍ତି । ସେହି ଖୋଳପାର ମୁହଁ ନ ଥାଏ, ଏମାନେ କିଛି ନ ଖାଇ ସେହି ଖୋଳପା ମଧ୍ୟରେ କେତେକ ଦିନ ରହନ୍ତି । ଏହାକୁ ପ୍ରଜାପତିର ଦ୍ୱିତୀୟ ଅବସ୍ଥା କହନ୍ତି । ଉପରେ ପ୍ରଜାପତିର ପ୍ରଥମ ଓ ଦ୍ୱିତୀୟ ଅବସ୍ଥାର ଚିତ୍ର ଦିଆ ଯାଇଅଛି । କେତେକ ଦିନ ଉତ୍ତାରୁ ସେହି ଖୋଳପା କାଟି ତାହା ମଧ୍ୟରୁ ପ୍ରଜାପତି ବାହାରି ଉଡିଯାଏ । ଏହାକୁ ପ୍ରଜାପତିର ତୃତୀୟ ଅବସ୍ଥା କହନ୍ତି । ପାର୍ଶ୍ୱରେ ପ୍ରଜାପତିର ତୃତୀୟ ଅବସ୍ଥାର ଚିତ୍ର ଦିଆଯାଇଅଛି । ତୃତୀୟ ଅବସ୍ଥାରେ ପ୍ରଜାପତିମାନେ ଗଛର ପତ୍ର ନ ଖାଇ ଫୁଲର ମଧୁପାନ କରି ବଞ୍ଚନ୍ତି ।



ଝିଣ୍ଟିକାମାନଙ୍କଦ୍ୱାରା କେତେ ଆମ୍ଭମାନଙ୍କର ଭୟଙ୍କର ଅନିଷ୍ଟ ହୁଏ । ଏମାନେ ଏପରି ଅଧିକ ସଂଖ୍ୟାରେ ଉଡି ଆସନ୍ତି ଯେ ସୂର୍ଯ୍ୟର କିରଣ ସୁଦ୍ଧା ଦିଶଇ ନାହିଁ । ଏମାନେ ଯେଉଁ ସ୍ଥାନରେ ଓହ୍ଲାନ୍ତି ସେହି ସ୍ଥାନରେ ଗଛର ପତ୍ର, ବିଲର ଧାନ, ଘାସ ପ୍ରଭୃତି ସବୁ ଖାଇ ଦିଅନ୍ତି । ଏଣୁ ଝିଣ୍ଟିକାମାନଙ୍କ ଯୋଗୁଁ କୌଣସି ସମୟରେ ଦୁର୍ଭିକ୍ଷ ହୁଏ ।

ଆଫ୍ରିକା ମହାଦେଶରେ ଏକଜାତିର ବଡ ଜୁଳୁଜୁଳିଆପୋକ ଅଛନ୍ତି । ସେହି ଦେଶର ଲୋକେ କେତେଗୁଡିଏ ପୋକଙ୍କୁ ଧରି ଗୋଟିଏ ବୋତଲ ଭିତରେ ପୂରାଇ ଘରଭିତରେ ରଖିଥାନ୍ତି । ସେହି ବୋତଲରୁ ଏପରି ଆଲୁଅ ବାହାରେ ଯେ ସେମାନଙ୍କୁ ରାତିରେ ଆଉ ଦୀପ ଜାଳିବାକୁ ହୁଅଇ ନାହିଁ ସେହି ଆଲୁଅରେ ସେମାନେ ଲୁଗା ସିଲାଇ ପ୍ରଭୃତି କାର୍ଯ୍ୟ ମଧ୍ୟ କରି ପାରନ୍ତି ।

ମାକଡସାମାନେ କୀଟ, ପତଙ୍ଗ, ଧରି ଖାନ୍ତି । ଏମାନଙ୍କ ଜାଲରେ ମଶା, ମାଛି, ଝିଣ୍ଟିକା ପ୍ରଭୃତି ପଡିଲେ ଯାଇ ପାରନ୍ତି ନାହିଁ । ଏକ ଜାତିର ବଡ ମାକଡସା ଅଛନ୍ତି ସେମାନେ ଘରଚଟିଆ ପରି ଛୋଟ ପକ୍ଷୀ ଓ ଛୋଟ ମୂଷା ଧରି ଖାନ୍ତି ଏମାନଙ୍କ ଜାଲରେ ଏଣ୍ଡୁଅ କିମ୍ବା ଝିଟିପିଟି ଅବା ଛୋଟ ସାପ ପଡିଲେ ଯାଇ ପାରନ୍ତି ନାହିଁ ।

## ପ୍ରଭାତ ।

ବିରାମଦାୟିନୀ ରଜନୀ ପାହିଲା, ଜାଗରଣକାରୀ ପ୍ରଭାତ ଆଇଲା ।
ଗଲା ଅନ୍ଧକାର ଦଶଦିଗ ଛାଇ, ଆଲୋକ ଆସିଲା କି ରଙ୍ଗରେ ଧାଇଁ ।
ଗମନାଗମନ କାଳ ଭେଟାଭେଟି, ହୋଇଲା ଦୁହିଙ୍କ ପୂରୁବ-ନଭେଟି ।
ଅନ୍ଧାର କାଳିମା ଗଲା ଛାଡ଼ି ଛାଡ଼ି, ଆଲୋକ ଝଟକ ଆସିଲାତ ମାଡ଼ି ।
ଏକାଳ ଗଗନ ବର୍ଣ୍ଣି ବଇଭବ, ଛବି ବା ବର୍ଣ୍ଣରେ ବର୍ଣ୍ଣି ଅସମ୍ଭବ ।
ସେ ଛବେ ଜଗତ ହେଲା ଜାଗରିତ, ଗାଇଲା ଧରଣୀ ଉଠି ପ୍ରଭୁ-ଗୀତ ।
ବାଦ୍ୟ ବଜାଇଲା ପକ୍ଷୀ କୁମ୍ଭାଟୁଆ, ଧରିଲା କଣ୍ଟଲପରୀ ଜୟହୁଳା ।
କୋକିଳ କୁକୁଟ କାକ ବାନ୍ଧି ମେଳି, ତାନ ମାନ ଧରି କଲେ ଗାନକେଳି ।
ବୀଣାର ମଧୁର ନିସ୍ୱନକୁ ଜିଣି, ଭ୍ରମର ଝଙ୍କାର ପଡ଼ିଲା ଉଛୁଳି ।
ଘେନ ପୁଷ୍ପଗନ୍ଧ ଶୀତଳ ପବନ, ପ୍ରଭୁଙ୍କ ପ୍ରସାଦ କଲା ବିତରଣ ।
କରି ସୁରଞ୍ଜିତ ଆଗ ଅରୁଣିମା— ରଙ୍ଗରେ ପୂରୁବପାଶ ବ୍ୟୋମସୀମା ।
ପଛେ ଦେଖା ଦେଲେ ଉଠି ବାଳରବି; କି ସୁନ୍ଦର ଝଟଝଟ ଲାଲଛବି ।
କ୍ରମେ କରଜାଲ କଲେ ପ୍ରସାରିତ, ଗଗନ ପୃଥିବୀ ହେଲା ଆଲୋକିତ ।

---

## ଉଦ୍ଭିଦ ।

ବୃକ୍ଷ, ଲତା, ତୃଣ, ଶିଉଳି, ଛତୁ ପ୍ରଭୃତିକୁ ଉଦ୍ଭିଦ କହନ୍ତି । ଉଦ୍ଭିଦରୁ ଆମ୍ଭମାନଙ୍କ ଖାଦ୍ୟ, ବସ୍ତ୍ର, ଚୂଣ, ନାନାପ୍ରକାର ଔଷଧ, କର୍ପୂର, ତେଲ, ଘର, ଦ୍ୱାର, ମେଜ, ପଲଙ୍କ ପ୍ରଭୃତି ନାନାପ୍ରକାର ପଦାର୍ଥ ପ୍ରସ୍ତୁତ ହୁଏ । ବୃକ୍ଷ ଚାରିଭାଗରେ ବିଭକ୍ତ । ଯଥା; ମୂଳ, କାଣ୍ଡ, ଶାଖା ଓ ପତ୍ର । ଗଛର ଗଣ୍ଡିକୁ କାଣ୍ଡ କହନ୍ତି । ମାଟିରୁ ମୂଳବାଟେ କାଣ୍ଡ ଦେଇ ଡାଳ ଓ ପତ୍ରକୁ ରସ ଯାଏ । ଏହି ରସଦ୍ୱାରା ଗଛ ବଢ଼େ । ଉଦ୍ଭିଦମାନଙ୍କ ମଧ୍ୟରୁ କେତେକ ଦୁଇ ଚାରି ଦିନ, କେତେକ ଦୁଇ ତିନି ମାସରୁ ଅଧିକ ବଞ୍ଚନ୍ତି ନାହିଁ । କେତେକ ଉଦ୍ଭିଦ ଏକ ବର୍ଷରୁ ଅଧିକ ବଞ୍ଚନ୍ତି ନାହିଁ । କୌଣସି୨ ଜାତିର ଉଦ୍ଭିଦକୁ ସହସ୍ର୨ ବର୍ଷ ବଞ୍ଚିବାର ଦେଖାଯାଏ । ଅଧିକାଂଶ ଉଦ୍ଭିଦ ଆଲୁଅ ଓ ବାୟୁବ୍ୟତୀତ ବଞ୍ଚି ପାରନ୍ତି ନାହିଁ; ଯେମନ୍ତ ବୃକ୍ଷ, ଘାସ, ପ୍ରଭୃତି । କେତେକ ଉଦ୍ଭିଦ

ଜଳ ମଧ୍ୟରେ ଥାଇ ବଢ଼ନ୍ତି; ଯେମନ୍ତ ଟଙ୍କୁଡ଼ିଆଦଳ ପ୍ରଭୃତି । ଏକ ଜାତିର ଉଦ୍ଭିଦ ଅଛି ତାହା ସମୁଦ୍ରର ଗଭୀରଜଳମଧ୍ୟରେ ଜନ୍ମି ବଢ଼େ ।

ଉଦ୍ଭିଦର ସବୁ ଅଂଶଠାରୁ ଫୁଲ ଅଧିକ ସୁନ୍ଦର ଅଟେ । ଧଳା, ରଙ୍ଗ, ନାଳ, ହଳଦିଆ, ବାଇଗଣୀ ପ୍ରଭୃତି ନାନାବର୍ଣ୍ଣର ଫୁଲ ହୁଏ । କୌଣସି ଫୁଲରେ ନାନାପ୍ରକାର ବର୍ଣ୍ଣ ଦେଖାଯାଏ । ଫୁଲ ବା କଢ଼ି ମଧ୍ୟରେ ଯେତେବେଳେ ଫଳ ପ୍ରଥମ ସଞ୍ଚାର ହୁଏ ତେତେବେଳେ ତାହାର ଆକୃତି ମୋଟରଷ ଅବା ତାହାଠାରୁ କ୍ଷୁଦ୍ର ହୋଇଥାଏ । ଚେରରୁ କାଣ୍ଡ ଓ ଶାଖା ଦେଇ ଯେଉଁ ରସ ଆସେ ସେହି ରସରେ ଫଳ କ୍ରମେ ପୁଷ୍ଟ ହୋଇ ପକ୍ୱ ହୁଏ । ପ୍ରାୟ ସବୁ ଫଳର ମଞ୍ଜିଅଛି । କୌଣସି ଫଳରେ ଏକ, କୌଣସି ଫଳରେ ଯୋଡ଼ାଏ, କୌଣସି ଫଳରେ ଅବା ଅଧିକ ମଞ୍ଜିଥାଏ । ମଞ୍ଜି ଅବା ଫଳକୁ ପୋତିଲେ କମ୍ବା ବୁଣିଲେ ମାଟିରେ ଥିବା ରସରେ ତାହା ଫୁଲି ଉଠେ ଏବଂ ତାହାର ଆବରଣ ଫାଟିଯାଇ ସେଥିରୁ ଏକ ଗଜା ବାହାରେ । ସେହି ଗଜା ଦୁଇଭାଗ ହୋଇ ଏକଭାଗ ଉପରକୁ ଉଠି ବୃକ୍ଷ ହୁଏ ଓ ଅନ୍ୟ ଭାଗ ମାଟି ଭିତରକୁ ଯାଇ ଚେର ହୁଏ । ବୃକ୍ଷ ଏହି ଚେରଦ୍ୱାରା ଭୂମିରୁ ରସ ଟାଣି ନେଇ ପୁଷ୍ଟ ହୁଏ ।



---

## ତିମି ।

ପୃଥିବୀରେ ଯେତେ ଜୀବ ଅଛନ୍ତି ତିମି ସବୁଠାରୁ ବୃହତ । ତିମି ୬୦।୭୦ ହାତପର୍ଯ୍ୟନ୍ତ ଦୀର୍ଘ ହୁଏ । ସ୍ଥଳବିଶେଷରେ ଶତ ହସ୍ତରୁ ଅଧିକ ଦୀର୍ଘର ତିମି ଦେଖା ଯାଇଅଛି । ଆମ୍ଭେମାନେ ଯେଉଁ ଚର୍ବିବତି ଜାଳୁଁ ତାହା ଏହି ତିମି ତେଲରୁ ପ୍ରସ୍ତୁତ ହୁଏ । ବଡ଼ ତିମି ଦେହରୁ ୮୦୦ ମହଣ ତେଲ ବାହାରେ । ତିମି ଜଳଚର ଜନ୍ତୁ । ତିମି ଡିମ୍ବ ପ୍ରସବ ନ କରି ଛୁଆ ପ୍ରସବ କରେ । ତିମିଛୁଆ ଜନ୍ମ ଉତ୍ତାରୁ ମାତାର ଦୁଗ୍ଧପାନ କରି ବଢ଼େ । ଦକ୍ଷିଣ ଓ ଉତ୍ତରମହାସାଗରରେ ଅନେକ ତିମି ଅଛନ୍ତି ।



ତିମି ମାରିବା ଅତ୍ୟନ୍ତ ଭୟାନକ କାର୍ଯ୍ୟ । ଲୋକେ ଗୋଟିଏ ବଡ଼ ଜାହାଜ ଓ କେତେକ ଖଣ୍ଡ ନୌକା ନେଇ ସମୁଦ୍ରରେ ତିମି ଖୋଜି ବୁଲୁଥାନ୍ତି । ଦୂରରୁ ତିମିକୁ ଭାସୁଥିବାର ଦେଖିଲେ ୬।୭ ଜଣ ମନୁଷ୍ୟ ଗୋଟିଏ ନୌକାରେ ଚଢ଼ି ତାହା ପାଖକୁ ଯାନ୍ତି । ତିମି ପାଖକୁ ଗଲାକ୍ଷଣି ଜଣେ ଅତ୍ୟନ୍ତ ବଳରେ ତିମି ଦେହରେ ଗୋଟାଏ ତେଣ୍ଟା ମାରି ଦିଏ । ସେହି ତେଣ୍ଟାରେ ଗୋଟିଏ ଲମ୍ବ ଦଉଡ଼ି ବନ୍ଧା ଥାଏ । ଦେହରେ ତେଣ୍ଟା ବାଜିଲାକ୍ଷଣି ତିମି ଅତ୍ୟନ୍ତ ବେଗରେ ଜଳକୁ ବୁଡ଼ିଯାଏ । ତିମି ଯେତେ ଦୂରକୁ ଯାଉଥାଏ ନୌକାରେ ଥିବା ଲୋକେ ସେତେ ଦଉଡ଼ି ଛାଡ଼ି ଦେଉଥାନ୍ତି । ତାହା ନ କଲେ ନୌକା ସେହିକ୍ଷଣି ବୁଡ଼ିଯାଏ । ନିଶ୍ୱାସ ମାରିବା ଲାଗି ତିମି ପୁଣି ଭାସି ଉଠିଲାରୁ ନୌକାର ଲୋକମାନେ ତାହା ପାଖକୁ ନୌକା ନେଇ ଯାଇ ପୁଣି ତାହାକୁ ତେଣ୍ଟା ମାରନ୍ତି । ତେଣ୍ଟା ଖାଇ ତିମି ଅତ୍ୟନ୍ତ ବେଗରେ ପଳାଇ ଯାଏ । ସେ ଯେତେ ଦୂରକୁ ଯାଉଥାଏ ନୌକାର ଲୋକେ ପୂର୍ବପରି ସେତିକି ଦଉଡ଼ି ଛାଡ଼ି ଦେଉଥାନ୍ତି । ଦଉଡ଼ିଏହିପରି ଛାଡ଼ୁ୨ ତିମି ନୌକାକୁ ଏକ ଘଣ୍ଟାରେ ଦଶକ୍ରୋଶ ପର୍ଯ୍ୟନ୍ତ ଓଟାରି ନେଇଯାଏ । ତିମି ଯେତେବେଳେ ସ୍ଥିର ହୁଏ ନୌକାର ଲୋକେ ତାହା ପାଖକୁ ଯାଇ ପୁଣି ତେଣ୍ଟା ମାରନ୍ତି । ଏହିପରି କେତେକ ଥର ତେଣ୍ଟା ବାଜିଲେ, ଦେହରୁ ଅନେକ ରକ୍ତ ବାହାରି ଯିବାରୁ ତିମି ମରିଯାଏ । ନୌକାର ଲୋକେ ତାହାକୁ ଦଉଡ଼ିରେ ବାନ୍ଧି ଏବଂ ଓଟାରି କୂଳକୁ ନେଇ ଆସନ୍ତି । ତହୁଁ ଉତ୍ତାରୁ ତାହା ଉପରକୁ ଉଠି କୁରାଢ଼ିରେ ଖଣ୍ଡ୨ କରି କାଟି ତାହା ଦେହରୁ ଚର୍ବି କାଢ଼ନ୍ତି । ସେହି ଚର୍ବିକୁ ପରିଷ୍କାର କରି ଏବଂ ପିମ୍ପାରେ ବନ୍ଦ କରି ଅନ୍ୟାନ୍ୟ ଦେଶକୁ ପଠାଇ ଦିଅନ୍ତି । ଚର୍ବି କାଢ଼ି ନେଲେ

ସାଗୁଣା ପ୍ରଭୃତି ଅସି ତିମିର ମାଂସ ଖାନ୍ତି । ହାତୀଦାନ୍ତରେ ଯେପରି ଅନେକ କାର୍ଯ୍ୟ ହୁଏ, ତିମିହାଡ଼ରେ ସେହିପରି ଅନେକ କାର୍ଯ୍ୟ ହୁଏ । ଗୋଟାଏ ବଡ଼ ତିମିକୁ ମାରିଲେ ପ୍ରାୟ ଛଅ ସାତ ହଜାର ଟଙ୍କା ଉପାର୍ଜନ ହୁଏ ।

---

## ବ୍ୟାବହାରିକ ଜ୍ଞାନ ।

### ଚନ୍ଦନ, କର୍ପୂର, ଅଫିମ, ଖଇର, ଚୂଣ, ସାଗୁଦାନା ଓ ହିଙ୍ଗୁ ।

ଆମ୍ଭେମାନେ ଯେଉଁ ସବୁ ପଦାର୍ଥ ବ୍ୟବହାର କରୁଁ ତନ୍ମଧ୍ୟରୁ କେତେକ ଉଦ୍ଭିଦରୁ, କେତେକ ଧାତୁପଦାର୍ଥରୁ, କେତେକ ଜନ୍ତୁମାନଙ୍କ ଦେହରୁ ପ୍ରସ୍ତୁତ ହୋଇଅଛି । ଉଦ୍ଭିଦରୁ ପ୍ରସ୍ତୁତ ହୋଇଥିବା ପଦାର୍ଥ ମଧ୍ୟରେ ଚନ୍ଦନ, କର୍ପୂର, ଅଫିମ, ଖଇର, ଚୂଣ, ସାଗୁଦାନା, ଆରାରୁଟ, ହିଙ୍ଗୁ, ପ୍ରଭୃତି ପ୍ରଧାନ ।

ଚନ୍ଦନ ଏକପ୍ରକାର ଗଛର ମଞ୍ଜ ଅଟେ । ସେହି ମଞ୍ଜକୁ ଘଷି ଲଗାନ୍ତି । ଚନ୍ଦନ ତିନିପ୍ରକାର; ଶ୍ୱେତଚନ୍ଦନ, ରକ୍ତଚନ୍ଦନ ଓ ପୀତଚନ୍ଦନ । ଶ୍ୱେତ ଓ ପୀତଚନ୍ଦନ ଏକଗଛରୁ ହୁଏ, ମାତ୍ର ରକ୍ତଚନ୍ଦନର ଗଛ ଭିନ୍ନ ଅଟେ । ଭାରତବର୍ଷର ଦକ୍ଷିଣଦିଗରେ ଏବଂ ଲଙ୍କାଦ୍ୱୀପରେ ଅନେକ ଚନ୍ଦନଗଛ ଅଛି ।

ଏକପ୍ରକାର ବୃକ୍ଷ ଅଛି ତାହାକୁ କର୍ପୂରବୃକ୍ଷ କହନ୍ତି । ସେହି ବୃକ୍ଷ ଦେହରୁ ଯେଉଁ ତେଲ ବାହାରେ ତାହାକୁ କ୍ଷୀରରେ ଶୁଖାଇ ନେଇ କର୍ପୂର ପ୍ରସ୍ତୁତ କରନ୍ତି । କେହି କେହି କର୍ପୂରବୃକ୍ଷକୁ ଖଣ୍ଡ ଖଣ୍ଡ କରି କାଟି ପାଣିରେ ସିଝାଇ କର୍ପୂର ପ୍ରସ୍ତୁତ କରନ୍ତି । କର୍ପୂର ତେଲ ସଙ୍ଗେ ମିଶିଯାଏ, ଜଳ ସଙ୍ଗେ ମିଶେ ନାହିଁ । ଏହା ପବନରେ ଉଡ଼ିଯାଏ ଏବଂ ଅଗ୍ନି ଲାଗିଲେ ଜଳି ଉଠେ । ଜାପାନଦ୍ୱୀପରେ ଏବଂ ଭାରତମହାସାଗରର କେତେକ ଦ୍ୱୀପରେ ଅନେକ କର୍ପୂରବୃକ୍ଷ ଅଛି ।

ପୋସ୍ତ ବୋଲି ଏକପ୍ରକାର ଗଛ ଅଛି । ତାହା ଫଳକୁ ପୋସ୍ତଫଳ କହନ୍ତି । ପୋସ୍ତଫଳର ଅଠାକୁ ଶୁଖାଇ ଅଫିମ ପ୍ରସ୍ତୁତ କରନ୍ତି । ବିହାର, ରାଜପୁତାନା ଏବଂ ମାଳବ ପ୍ରଦେଶରେ ପୋସ୍ତର କୃଷି ହୁଏ ।

ବବ୍ବୁଲଗଛ ପରି ଏକପ୍ରକାର କଣ୍ଟାଗଛକୁ କାଟି ପାଣିରେ ସିଝାଇ ଖଇର ପ୍ରସ୍ତୁତ କରନ୍ତି । ଖଇର, ଅଫିମ, କର୍ପୂର ଓ ଚନ୍ଦନ ଅନେକ ଔଷଧରେ ଲାଗେ । ଓଡ଼ିଶାର ଗଡ଼ଜାତମାନଙ୍କରେ ଅନେକ ଖଇରଗଛ ଅଛି ।

ଶାଳଗଛରୁ ଏବଂ ଦେବଦାରୁଜାତୀୟ ଗଛରୁ ଝୁଣା ବାହାରେ । ଝୁଣା ଅନେକ କାର୍ଯ୍ୟରେ ଲାଗେ । ଝୁଣା ଧୂଆଁ ଦେଲେ ପବନ ନିର୍ମଳ ହୁଏ । ପଥରକୋଇଲାରୁ ଯେଉଁ ଝୁଣା ବାହାରେ ତାକୁ ରଜନ ବା ବଲାତଝୁଣା କହନ୍ତି । ଦେଖିବାକୁ ଗଲେ ରଜନ ମଧ୍ୟ ଉଦ୍ଭିଜ୍ଜ ପଦାର୍ଥ । ଯେଉଁ ବୃକ୍ଷ ସବୁ ବହୁକାଳ ମାଟିଭିତରେ ରହି ପଥରକୋଇଲା ହୋଇଅଛି, ରଜନ ସେହିଥିରୁ ଉତ୍ପନ୍ନ ହେଉଅଛି ।

ଏକପ୍ରକାର ଗଛର ମଞ୍ଜରୁ ସାଗୁଦାନା ପ୍ରସ୍ତୁତ ହୁଏ । ସାଗୁଦାନା ଅଳ୍ପରେ ପାକ ହୁଏ ବୋଲି ରୋଗିମାନଙ୍କୁ ଖାଇବାକୁ ଦିଅନ୍ତି । ଲଙ୍କା ପ୍ରଭୃତି ଦ୍ୱୀପରେ ଅନେକ ସାଗୁଦାନାଗଛ ଅଛି । ଅନ୍ନ ଯେପରି ଆମ୍ଭମାନଙ୍କ ପ୍ରଧାନ ଖାଦ୍ୟ, ପ୍ରଶାନ୍ତମହାସାଗରର କେତେକ ଦ୍ୱୀପବାସିଙ୍କ ସାଗୁଦାନା ସେହିପରି ପ୍ରଧାନଖାଦ୍ୟ ସେହି ଦ୍ୱୀପମାନଙ୍କର ଲକ୍ଷ ଲକ୍ଷ ଅଧିବାସୀ କେବଳ ସାଗୁଦାନା ଖାଇ ପ୍ରାଣ ଧାରଣ କରନ୍ତି । ସାଗୁଦାନା ପରି ଆରାରୁଟ ମଧ୍ୟ ରୋଗିଙ୍କ ପଥ୍ୟ ଅଟେ । ଆରାରୁଟକୁ ରନ୍ଧାଇଲେ ଭଲ ଅମ୍ବର ପ୍ରସ୍ତୁତ ହୁଏ । ଆରାରୁଟଗଛ ହଳଦୀଗଛପରି ହୁଏ । ଆରାରୁଟ ଗଛର ମୂଳକୁ କୁଟି ସେଥିରୁ ମଣ୍ଡ କାଢ଼ନ୍ତି । ସେହି ମଣ୍ଡକୁ ଉତ୍ତମ ରୂପେ ପରିଷ୍କାର କରି ଶୁଖାଇ ନେଲେ ଆରାରୁଟ ହୁଏ । ଭାରତବର୍ଷର ନାନା ପ୍ରଦେଶରେ ଆରାରୁଟର କୃଷି ହୁଏ ।


( ସାଗୁଦାନାଗଛ । )

ହିଙ୍ଗୁ ଅନେକ ଔଷଧରେ ଲାଗେ । ଏକପ୍ରକାର ଗଛର ଅଠାରୁ ହିଙ୍ଗୁ ପ୍ରସ୍ତୁତ ହୁଏ ।

---

## ହସ୍ତୀ ।

ହସ୍ତୀ ପଶୁମାନଙ୍କ ମଧ୍ୟରେ ସବୁଠାରୁ ବୃହତ୍ତମ ଅଟେ । ଏ ଦେଶର ଗଡ଼ଜାତମାନଙ୍କରେ ଅନେକ ବନ୍ୟହସ୍ତୀ ଅଛନ୍ତି । ଏମାନେ ଦଳ ବାନ୍ଧି ରହନ୍ତି । ହାତୀକୁ



ପାଳିଲେ ପୋଷ ମାନେ । ପୋଷାହାତୀରୁ ଲୁଅ ହୁଏ । ପୂର୍ବକାଳରେ ଏ ଦେଶର ଅନେକ ଯୋଦ୍ଧା ହାତୀ ଉପରେ ଚଢ଼ି ଯୁଦ୍ଧ କରୁଥିଲେ । ହାତୀ ଜଳରେ ଉତ୍ତମ ପହଁରି ପାରେ । ହାତୀର ଟିକିଏ ଅନିଷ୍ଟ କଲେ ସେ ତାହା ଭୁଲିପାରେ ନାହିଁ । ସମୟ ବୁଝି ତାହାର ଅନିଷ୍ଟ କରେ । ହାତୀ ଯାହାକୁ ଭଲ ପାଏ, ବିପଦ ପଡ଼ିଲେ ତାହାକୁ ସାହାଯ୍ୟ କରେ । ଥରେ ଏକ ମାହୁନ୍ତ ମଦ ପିଇ ବାଟରେ ଗୋଳମାଳ କରୁଥିଲା । କନେଷ୍ଟବଲମାନେ ତାହାକୁ ଧରି ନେଇଯିବାକୁ ଆସିଲାରୁ, ମାହୁନ୍ତ ଦଉଡ଼ି ଯାଇ ହାତୀ ପେଟତଳେ ଶୋଇ ରହିଲା । କନେଷ୍ଟବଲମାନେ ତାହାକୁ ଉଠାଇ ଆଣିବାକୁ ଚେଷ୍ଟା କଲାରୁ ହାତୀ ସେମାନଙ୍କୁ ତଡ଼ି ଦେଲା । କନେଷ୍ଟବଲମାନେ ଅନେକ ଚେଷ୍ଟା କରି ସୁଦ୍ଧା ତାହାକୁ ଆଣି ପାରିଲେ ନାହିଁ ।

ଏକ ମାହୁନ୍ତର ଗୋଟିଏ ସାନ ପିଲା ଥିଲା । ମାହୁନ୍ତର ସ୍ତ୍ରୀ କୌଣସି କାର୍ଯ୍ୟରେ ଦୂରକୁ ଯିବାବେଳେ ଖଣ୍ଡିଏ ତାଳପତ୍ର ପଙ୍ଖା ଓ ପିଲାକୁ ହାତୀ ପାଖରେ ରଖିଦେଇ ଯାଉଥିଲା । ସେ ଲେଉଟି ଆସିବା ପର୍ଯ୍ୟନ୍ତ ହାତୀ ଅତ୍ୟନ୍ତ ଯତ୍ନରେ ପିଲାକୁ ରକ୍ଷା କରୁଥିଲା । ପିଲା କାନ୍ଦିଲେ ହାତୀ ଶୁଣ୍ଢରେ ତାହାକୁ ବିଛଣା ସହିତ ଉଠାଇ ଦୋହଲାଇ ବୋଧ କରୁଥିଲା । ପିଲା ଦେହରେ ମାଛି ଅବା ମଶା ବସିଲେ ହାତୀ ଆପଣା

ଶୁଣ୍ଡରେ ତାଳପତ୍ରର ପଙ୍ଖା ଯୋଗ ତାହାକୁ ବିଞ୍ଚି ଦେଉଥିଲା । ଆଫ୍ରିକା ମହାଦେଶରେ ଅନେକ ହାତୀ ଅଛନ୍ତି । ଏ ଦେଶର ହାତୀଠାରୁ ଆଫ୍ରିକାର ହାତୀ ଅନେକ ବଡ଼ ହୁଅନ୍ତି । ଆଫ୍ରିକାର ଲୋକେ ମାଂସ ଭକ୍ଷଣ ଏବଂ ଦନ୍ତ ସଂଗ୍ରହ କରିବା ସକାଶେ ପ୍ରତି-ବର୍ଷ ଅନେକ ହାତୀ ମାରନ୍ତି ।

---

## ସିଂହ ।



ବର୍ତ୍ତମାନ ଭାରତର ରାଜପୁତାନା ଏବଂ ଗୁଜରାଟ ବ୍ୟତୀତ ଅନ୍ୟ ପ୍ରଦେଶରେ ସିଂହ ଦେଖାଯାନ୍ତି ନାହିଁ । ଆରବ ଦେଶ ଏବଂ ଆଫ୍ରିକା ମହାଦେଶରେ ଅନେକ ସିଂହ ଅଛନ୍ତି । ସିଂହକୁ ପିଲାଦିନରୁ ପାଳିଲେ ପୋଷା ମାନେ ।

ହାତୀ, ବାଘ, ଭାଲୁ ପ୍ରଭୃତିଙ୍କୁ ସିଂହ ମାରି ପାରେ, ଏଣୁ ଏହାକୁ ପଶୁରାଜ କହନ୍ତି ।

ସିଂହର ଏପରି ବଳ ଯେ ବଡ଼ ମହିଷ ଅବା ଘୋଡ଼ାକୁ ମାରି ଦାନ୍ତରେ କାମୁଡ଼ି ତିନି ଚାରି କ୍ରୋଶ ଦୂରକୁ ନେଇ ଯାଏ ।

ରୋମନଗରର ଜଣେ କ୍ରୀତଦାସ ପଳାଇ ଯାଇ ବନରେ ଗୋଟାଏ ସିଂହଗୁମ୍ଫା ଭିତରେ ଲୁଚି ରହିଥିଲା । ସେହି ଗୁମ୍ଫା ସିଂହର ବୋଲି ସେ ଜାଣି ନ ଥିଲା । ଅଳ୍ପକ୍ଷଣ ଉତ୍ତାରୁ ସେ ଦେଖିଲା ଗୋଟାଏ ଲେଙ୍ଗଡ଼ା ସିଂହ ସେହି ଗୁମ୍ଫାକୁ ଆସୁଅଛି । ସିଂହକୁ ଆସୁଥିବାର ଦେଖି ତାହାର ଅତ୍ୟନ୍ତ ଭୟ ହେଲା । ମାତ୍ର ସିଂହ ତାହାକୁ ଦେଖି କିଛି କଲା ନାହିଁ । ତାହା ପାଖକୁ ଯାଇଁ ତାହାକୁ ଗୋଟାଏ ଗୋଡ଼ ଦେଖାଇ ଦେଇ ବସିଲା । ସେ ଦେଖିଲା ସିଂହ ଗୋଡ଼ତଳେ ଗୋଟାଏ କଣ୍ଟା ଫୁଟି ଥିବାରୁ ସିଂହ ଭଲ ଚାଲି ପାରୁ ନାହିଁ । ସେ ସିଂହ ଗୋଡ଼ରୁ କଣ୍ଟା କାଢ଼ି ଦେଲା । ସିଂହ ସଙ୍ଗେ ସେ ସେହି ଗୁମ୍ଫାରେ କେତେକ ଦିନ ରହିଲା । ସିଂହ ପ୍ରତ୍ୟହ ସେହି ଦାସ ନିମନ୍ତେ ପଶୁ ମାରି ତାହାର ମାଂସ ଆଣି ଦେଉଥିଲା । ଦିନେ କେତେକ ଜଣ ବାଣୁଆ ସେହି ସିଂହକୁ ଫାଶ ବସାଇ ଧରି ନେଇ ଗଲେ । ତାହା ଉତ୍ତାରୁ ସେହି ଦାସ ଖାଇବା ପଦାର୍ଥ ଲୋଡ଼ୁ୨ ସିପାହିମାନଙ୍କ ଭେଟରେ ପଡ଼ି ପୁନର୍ବାର ବନ୍ଦୀ ହେଲା । ପଳାଇ ଯାଇଥିଲା ବୋଲି ସେହି ଦାସକୁ ଗୋଟାଏ ସିଂହ ମୁହଁରେ ଦେଇ ମାରିବାକୁ ରାଜା ଆଦେଶ କଲେ । ରାଜାଙ୍କର ଆଦେଶ ପାଇ ସିପାହିମାନେ ଗୋଟାଏ କ୍ଷୁଧିତ ସିଂହର ପିଞ୍ଜରା ମଧ୍ୟରେ ତାହାକୁ ଛାଡ଼ି ଦେଇ ପିଞ୍ଜରାର ଦ୍ୱାର ବନ୍ଦ କରି ଦେଲେ । ସିଂହ ତାହାକୁ ଦେଖିଲା କ୍ଷଣି ଖାଇବା ଲାଗି ଗର୍ଜ୍ଜନ କରି ତାହା ପାଖକୁ ଡେଇଁପଡ଼ିଲା । ମାତ୍ର ପାଖକୁ ଆସି ତାହା ଗୋଡ଼ ପାଖରେ ଶୋଇ ତାହା ଦେହ ଚାଟିଲା । ସମସ୍ତେ ଏହା ଦେଖି ଚମତ୍କୃତ ହେଲେ । ଦାସ ଯେଉଁ ସିଂହର ଗୋଡରୁ କଣ୍ଟା କାଢ଼ି ଦେଇଥିଲା ଏ ସେହି ସିଂହ । ସିଂହ ତାହାକୁ ଖାଇବା ସକାଶେ ଆସିଥିଲା, ମାତ୍ର ଚିହ୍ନି ପାରି ତାହାକୁ ନ ମାରି ତାହାଠାରେ ସ୍ନେହ ପ୍ରକାଶ କଲା । ରାଜା ଏହା ଜାଣି ପାରି ତାହାକୁ ଓ ସିଂହକୁ ଛାଡ଼ିଦେଲେ । ସେ ସିଂହ ସଙ୍ଗେ ଅନେକଦିନ ଏକତ୍ରରେ ରହିଲା ।

ସିଂହର ଗଳାରେ କେଶର ଅଛି । କେଶର ଅଛି ବୋଲି ଏହାକୁ କେଶରୀ କହନ୍ତି । ସିଂହ ରାଗିଲେ କେଶର ଫୁଲିଉଠେ । ସିଂହ ଦେଖିବାକୁ ଯେପରି ଭୟାନକ ଓ ବଳବାନ୍ ସିଂହୀ ସେପରି ନୁହେ । ସିଂହୀର କେଶର ହୁଏ ନାହିଁ । ସିଂହୀ ଏକାବେଳକେ ତିନି ଚାରିଗୋଟି ଛୁଆ ପ୍ରସବ କରେ ।

## ଜିରାଫ ।

ଏହା ଆଫ୍ରିକାମହାଦେଶର ଜନ୍ତୁ । ବଡ଼ ଜିରାଫର ମୁଣ୍ଡରୁ ଖୁରା ପର୍ଯ୍ୟନ୍ତ ମାପିଲେ ଉଚ୍ଚରେ ବାର କି ତେର ହାତ ହେବ, ମାତ୍ର ପଛଅଡେ ମାପିଲେ ଉଚ୍ଚରେ ଛଅ ହାତରୁ ଅଧିକ ହେବ ନାହିଁ । ଏହାର ପଛଗୋଡଠାରୁ ଆଗଗୋଡ଼ ଅନେକ ବଡ଼ । ଜିରାଫର ଚର୍ମ ପ୍ରାୟ ଚାରିଅଙ୍ଗୁଳ ମୋଟ । ବନ୍ଧୁକର ଗୁଳି ସହଜରେ ଏହା ଦେହ ଭେଦ କରି ପାରେ ନାହିଁ । ଏମାନେ ହରିଣ ପରି ଦଳବଦ୍ଧ ହୋଇ ରହନ୍ତି; ଜିରାଫମାନେ ଗଛର ଡାଳ ଓ ପତ୍ର ଖାଆନ୍ତି । ହାତୀ ଯେପରି ଶୁଣ୍ଢରେ ଡାଳର ପତ୍ର ଆଣି ଖାଏ, ଜିରାଫ ସେହିପରି ଆପଣାର ଦୀର୍ଘଜିହ୍ୱାରେ ବୃକ୍ଷର ଶାଖା ପତ୍ରାଦି ଗୁଡ଼ାଇ ଆଣି ଖାଏ । ହରିଣ କିମ୍ବା ଗୋରୁ ପରି ଏମାନେ ସହଜରେ ଚରି ପାରନ୍ତି ନାହିଁ । ଗୋରୁ ଅବା ମହିଷ ପରି ଏମାନଙ୍କର ବେକ ତଳକୁ ଅଧିକ ନତ ହୁଏ ନାହିଁ । ଜଳ ପିଇବା ବେଳେ ଜିରାଫ ଆଗ ଦୁଇ ଗୋଡ଼କୁ ଦୁଇପାର୍ଶ୍ୱକୁ ବିସ୍ତାର କରି ବେକକୁ ଧନୁପରି ନୁଆଇଁ ଜଳ ପିଏ । ଏମାନେ ଅତ୍ୟନ୍ତ ବେଗରେ ଦଉଡ଼ି ପାରନ୍ତି । ସିଂହ ହଠାତ୍ ଜିରାଫ ପାଖକୁ ଆସିଲେ ଜିରାଫ ଏପରି ବଳରେ ସିଂହକୁ ଲାତ ମାରେ ଯେ ସିଂହ ସେହି



ଆଘାତରେ ଅସ୍ଥିର ହୋଇ ପଳାଇ ଯାଏ । ଏହାର ଦେହଚର୍ମ ଅତ୍ୟନ୍ତ ମୋଟ ହେବାରୁ ସିଂହର ଦାନ୍ତ ଓ ନଖରେ ଅଧିକ ଅନିଷ୍ଟ ହୁଏ ନାହିଁ । ସିଂହ ଏହା ପିଠି ଉପରକୁ ଡେଇଁପଡ଼ି ଏହା ଦେହରେ ନଖ ମାରି ଦେଇ ଏବଂ ବେକକୁ ଦାନ୍ତରେ କାମୁଡ଼ି ଧରେ । ଜିରାଫ ସିଂହକୁ ଏହିପରି ପିଠିରେ ଘେନି ଅନେକ ଦୂର ପର୍ଯ୍ୟନ୍ତ ଅତ୍ୟନ୍ତ ବେଗରେ ଦଉଡ଼ି ପଳାଏ । ସିଂହ ଜିରାଫ ପିଠି ଉପରେ ରହି ଅଧିକ ବଳରେ ତାହାକୁ ଆଡ଼ି ଧରେ । ଜିରାଫ ଏହିପରି ପ୍ରାୟ ଅଠଦଶ କୋଶ ପଳାଇଲା ଉତ୍ତାରୁ ସିଂହର ବଳରେ ଜିରାଫର ଗୋଡ ଓ ବେକର ଶକ୍ତି ଖସିଗଲେ ପଡ଼ିଯାଏ । ତହୁଁ ସିଂହ ତାହାକୁ ଖଣ୍ଡ ୨ କରି ଖାଏ । ଜିରାଫର ଛୁଆ ଜନ୍ମ ହୋଇ ଠିଆ ହେଲେ ଉଚ୍ଚରେ ଛଅହାତ ପର୍ଯ୍ୟନ୍ତ ହୁଏ ।

## ଇଗଲ ।



ଏଠାରେ ଯେଉଁ ପକ୍ଷୀର ଚିତ୍ର ଅଛି ତାହାକୁ ଇଗଲ କହନ୍ତି । ସବୁ ପକ୍ଷୀଠାରୁ ଏହାର ବଳ ଅଧିକ ଅଟେ । ସିଂହକୁ ଯେପରି ପଶୁରାଜ କହନ୍ତି, ଇଗଲକୁ ସେହିପରି ପକ୍ଷିରାଜ କହନ୍ତି । ଇଗଲ ଶାଗୁଣାଠାରୁ ବଡ଼ ହୁଏ । ଏମାନେ ପର୍ବତର ଉଚ୍ଚଶିଖର ଉପରେ ଏବଂ ବୃହତ୍ ବୃକ୍ଷମାନଙ୍କ ଅଗ୍ରଭାଗରେ ବସା ନିର୍ମାଣ କରନ୍ତି । ଇଗଲମାନେ ଛେଳି, ମେଣ୍ଢା, ଠେକୁଆ, ବାଛୁରି, ସାନହରିଣ ପ୍ରଭୃତିକୁ ନେଇ ଯାଇ ଖାନ୍ତି । ବେଳେ ୨ ମନୁଷ୍ୟପିଲାମାନଙ୍କୁ ମଧ୍ୟ ନେଇ ଯାନ୍ତି । ଇଗଲ ବଡ଼ ହରିଣକୁ ମାରିପାରେ । ହରିଣପଲ ଚରୁଥିଲେ ଇଗଲ ଅନେକ ଦୂରରୁ ଗୋଟାଏ ହରିଣକୁ ଲକ୍ଷ୍ୟ କରି ଅତ୍ୟନ୍ତ ବେଗରେ ତାହାର ପିଠି ଉପରେ ଆସି ପଡ଼େ । ଆପଣାର ତୀକ୍ଷ୍ଣ ନଖମାନଙ୍କୁ ହରିଣର ଦେହ ଭିତରେ ପ୍ରବେଶ କରାଇ ଏପରି ବଳରେ ଧରେ ଯେ, ହରିଣ ଭୂମିରେ ଗଡ଼େଇ ଗଡ଼େଇ ହେଲେ କିମ୍ବା ଡିଆଁ ମାରିଲେ ସୁଦ୍ଧା ଛଡ଼ାଇ ପାରେ ନାହିଁ । ଇଗଲ-ମାନେ ଅନେକ ଦୂରରୁ ଆପଣାର ଶିକାର ଦେଖି ପାରନ୍ତି । ଏ ଦେଶରେ ଇଗଲ ନାହାନ୍ତି ।

---

## ବିଦ୍ୟା ।

ବିଦ୍ୟାପ୍ରସାଦେ ଧନ ଦ୍ରବ୍ୟ ପାଇ, ବିଦ୍ୟା ଥିଲେ ରାଜଗୋଷ୍ଠିକି ଯାଇ ।
ବିଦ୍ୟାହୀନ ଲୋକ ସ୍ୱଭାବେ ଅନ୍ଧ, ସବୁ କାର୍ଯ୍ୟେ ତାର ଘଟେ ଆପଦ ।
ସଭାରେ କହି ନ ପାରଇ କଥା, ପିତା ମାତାଙ୍କୁ ଯେ ଦିଅଇ ବ୍ୟଥା ।
ବିଦ୍ୟା-ଧନ ଅଟେ ଜଗତେ ସାର, ଚୋରଇ ନେଇ ନ ପାରଇ ଚୋର ।
ଖଣ୍ଡ ଠକ ହରି ନ ପାରେ ଠୁଳେ, ରାଜାହିଁ ନେଇ ନ ପାରଇ ବଳେ ।
ଯେବେ ବିଦେଶେ ଅନ୍ୟରାଜ୍ୟେ ଯାଇ, ଭାର ବୋଝ କରି ନ ଥାଇ ବହି ।
ସକଳ ଧନ ହୋଇଯାଏ ବ୍ୟୟ, ବିଦ୍ୟା-ଧନ କେବେଁ ନୁହଇ କ୍ଷୟ ।
ଦେଲେ ବ୍ୟୟ କଲେ ଯେ ଧନ ସରେ, ସେ ଧନ ଛାରକୁ ଲେଖା କେ କରେ ।
ବିଦ୍ୟା ଧନ ଯେଉଁ ଜନଠି ନାହିଁ, ମୂର୍ଖଲୋକ ବୋଲି ତାହାକୁ କହି ।

## ଧାତୁ ।

ଛୁରି, କତୁରୀ, ଥାଳି, ତାଳ, ଗଡ଼ୁ, ପିତ୍ତଳ, କଂସା, ପଇସା, ଅଧୁଲି, ଟଙ୍କା, ମୋହର, ନାନାପ୍ରକାର ଗହଣା ଧାତୁରେ ନିର୍ମିତ ହୁଏ । ଧାତୁ କଠିନ ପଦାର୍ଥ, ପିଟିଲେ ଭାଙ୍ଗେ ନାହିଁ । ଧାତୁକୁ ଅଗ୍ନିରେ ଅଉଟି ନାନାପ୍ରକାର କାର୍ଯ୍ୟ କରନ୍ତି । ଧାତୁ ଖଣିରୁ ମିଳେ । ସୁନା, ରୁପା, ତମ୍ବା, ରଙ୍ଗ, ପାରା, ସୀସା ଓ ଲୁହା ଏହି ସାତ ଧାତୁ ପ୍ରଧାନ ଅଟେ । ଧାତୁ ମଧ୍ୟରେ ସୁନାର ମୂଲ୍ୟ ଅଧିକ ଏବଂ ଲୁହା ଅନେକ କାର୍ଯ୍ୟରେ ଲାଗେ । ସୁନାରେ ଯେପରି ପାତଳ ପତ୍ର ହୁଏ ଅନ୍ୟ କୌଣସି ଧାତୁରେ ସେପରି ହୁଏ ନାହିଁ । ସୁନା ଅଧିକ ମିଳେ ନାହିଁ, ଏଣୁ ଏହାର ମୂଲ୍ୟ ଅତ୍ୟନ୍ତ ଅଧିକ । ସୁନାରେ କଳଙ୍କ ଲାଗେ ନାହିଁ । ସୁନାରେ ନାନାପ୍ରକାର ଗହଣା ଓ ମୋହର ପ୍ରସ୍ତୁତ ହୁଏ । ସୁନା ଛଡ଼ା ଅନ୍ୟାନ୍ୟ ଧାତୁଠାରୁ ରୁପାର ମୂଲ୍ୟ ଅଧିକ । ରୁପାରେ ଟଙ୍କା, ଅଧୁଲି, ସୁକି, ଦୋଅଣି, ନାନାପ୍ରକାର ଗହଣା ଓ ପାତ୍ରାଦି ନିର୍ମିତ ହୁଏ ।

ତମ୍ବା ଦେଖିବାକୁ ଲୋହିତବର୍ଣ୍ଣ । ତମ୍ବାରେ ପଇସା ଓ ନାନାପ୍ରକାର ବାସନ ପ୍ରସ୍ତୁତ ହୁଏ । ଥଟାରିମାନେ ତମ୍ବା ସଙ୍ଗେ ଖପର ମିଶାଇ ପିତ୍ତଳ ପ୍ରସ୍ତୁତ କରନ୍ତି । ପୃଥିବୀର ଅନେକ ଦେଶରେ ତମ୍ବାର ଖଣି ଅଛି ।

ରଙ୍ଗକୁ ଟିନ ବୋଲି ମଧ୍ୟ କହନ୍ତି । ରଙ୍ଗ ସଙ୍ଗେ ତମ୍ବା ମିଶାଇଲେ କଂସା ହୁଏ । ସାହେବମାନଙ୍କ ଦେଶରେ ରଙ୍ଗର ଅନେକ ଖଣି ଅଛି । ବର୍ତ୍ତମାନ ଏ ଦେଶରେ ସମସ୍ତେ ଯାହାକୁ ଟିନ ବୋଲି କହନ୍ତି ତାହା ଖାଲି ରଙ୍ଗ ଅବା ଟିନରେ ନିର୍ମିତ ହୁଏ ନାହିଁ । ଟିନକୁ ଅଉଟି ସେଥିରେ ପାତଳ ଲୁହାପତ୍ରକୁ ବୁଡ଼ାଇ ନିଅନ୍ତି । ଏହିପରି କଲେ ଲୁହାପତ୍ର ଟିନପତ୍ରପରି ଦିଶେ । ଏହି ପତ୍ରରେ ବାକ୍ସ, ଡବା ପ୍ରଭୃତି ନିର୍ମିତ ହୁଏ ।

ପାରା ଜଳ ପରି ତରଳ ପଦାର୍ଥ । ପାରାକୁ ଜମାଇ କାଚପିଠିରେ ଦେଲେ ଦର୍ପଣ ହୁଏ । ପାରା ଅନେକ ଔଷଧରେ ଲାଗେ । ପାରାରେ ଗନ୍ଧକ ମିଶାଇ ସିନ୍ଦୂର ପ୍ରସ୍ତୁତ କରନ୍ତି । ସୀସା ଅତ୍ୟନ୍ତ ନରମ ଧାତୁ । ସୀସାରେ ବନ୍ଧୁକର ଗୁଳି କାଗଜରେ ଲେଖିବାର ପେନ୍‌ସିଲ ପ୍ରସ୍ତୁତ ହୁଏ । ଯେଉଁ ଅକ୍ଷରରେ ଏହି ପୋଥି ଛପା ହୋଇଅଛି ତାହା ସୀସାରେ ନିର୍ମିତ ହୁଏ । ଫଳାମିନ୍ଦ୍ରର ସୀସାରେ ପ୍ରସ୍ତୁତ ହୁଏ ।

## ଭଲ୍ଲୂକ ।

କଳା, ଧଳା, ଧୂସର ଏହି ତିନ ବର୍ଣ୍ଣର ଭଲ୍ଲୂକ ଅଛନ୍ତି । ଏ ଦେଶର ବନମାନଙ୍କରେ ଅନେକ କଳାଭାଲୁ ଅଛନ୍ତି । ଏମାନେ ଭୂମିରେ ଗର୍ତ୍ତ କରି ବାସ କରନ୍ତି । ନାନାପ୍ରକାର ଫଳ ମୂଳ ଖାଇ ଏମାନେ ପ୍ରାଣଧାରଣ କରନ୍ତି । ଏମାନେ ଉଇ ଓ ଅଣ୍ଡା ଖାଇବାକୁ ବଡ଼ ସୁଖ ପାଆନ୍ତି । ଭାଲୁ ଯେତେବେଳେ କାହାରିକି ଆକ୍ରମଣ କରିବାକୁ ଆସେ ସେତେବେଳେ ପଛ ଦୁଇଗୋଡ଼ରେ ଠିଆ ହୁଏ । ଏମାନେ ଗଛରେ ଚଢ଼ି ପାରନ୍ତି ।



ଥରେ ଏକ ସାହେବ କେତେକ ଜଣ ଲୋକଙ୍କୁ ନେଇ ଏକ ବନ ମଧ୍ୟ ଦେଇ ଯାଉଥିବା ବେଳେ, ଗୋଟାଏ କଳା ଭାଲୁ ତାଙ୍କର ଖାନସମାକୁ ଗୋଡ଼ାଇଲା । ଖାନସମା ଦୁଇଖଣ୍ଡ ବଡ଼ ଦଉଡ଼ି ନେଇ ଗୋଟାଏ ଗଛ ଉପରକୁ ଉଠି ଯିବାରୁ, ଭାଲୁ ମଧ୍ୟ ତାହା ପଛେ ପଛେ ଗଛରେ ଚଢ଼ିଲା । ଖାନସମା ଗୋଟାଏ ଡାଳ ଅଗରେ ଦଉଡ଼ି ବାନ୍ଧି, ସେହି ଦଉଡ଼ି ଆଉ ଗୋଟାଏ ଗଛରେ ଓଟାଇ ବାନ୍ଧି ଦେବାକୁ ଲୋକମାନଙ୍କୁ କହିଲା । ଖାନସମାକୁ ସେହି ଡାଳରେ ଥିବାର ଦେଖି ଭାଲୁ ମଧ୍ୟ ସେହି ଡାଳକୁ ଗଲା । ଖାନସମା ଦ୍ୱିତୀୟ ଦଉଡ଼ି ଖଣ୍ଡିକ ଡାଳରେ ବାନ୍ଧି ତଳକୁ ଖସି ଆସିଲା । ତହୁଁ ଉତ୍ତାରୁ ପ୍ରଥମ ଦଉଡ଼ି ଖଣ୍ଡିକ ହଠାତ୍ କାଟି ଦେବାରୁ, ଡାଳସଙ୍ଗେ ଭାଲୁ ହଠାତ୍ ଉପରକୁ ଉଠି ଯାଇ, ପୁଣି ପ୍ରବଳ ବେଗରେ ଭୂମିରେ ପଡ଼ି ମରିଗଲା ।

ଆମେରିକାରେ ଗ୍ରିଜ୍‌ଲି ବୋଲି ଏକଜାତିର ଭୟଙ୍କର କଳାଭାଲୁ ଅଛନ୍ତି । ଏମାନେ ଓଜନରେ ୧୩ ମହଣ ପର୍ଯ୍ୟନ୍ତ ହୁଅନ୍ତି । ଶୀତପ୍ରଧାନ ଦେଶରେ ଅନେକ ଧଳାଭାଲୁ ଅଛନ୍ତି । ଧଳାଭାଲୁ, ବଲ୍‌ଗାହରିଣ, ସିନ୍ଧୁଘୋଟକ, ସୀଲଜନ୍ତୁ, ମାଛ ପ୍ରଭୃତି ଖାଇ ବଞ୍ଚନ୍ତି । ସୁବିଧା ପାଇଲେ ଧଳାଭାଲୁ ମନୁଷ୍ୟଙ୍କୁ ମଧ୍ୟ ମାରି ଖାଏ । ଏମାନେ ଉତ୍ତମରୂପେ ପହଁରି ପାରନ୍ତି ଏବଂ ଜଳ ମଧ୍ୟରେ ଅତ୍ୟନ୍ତ ବେଗରେ ଏକସ୍ଥାନରୁ ଅନ୍ୟ ସ୍ଥାନକୁ ବୁଡି ଯାଇ ପାରନ୍ତି ।

---

## କରଣପକ୍ଷୀ ।

ଏହି ପକ୍ଷିର ମୁଣ୍ଡର ପଛଭାଗରେ କଲମ ପରି କେତେଗୁଡିଏ ପର ଥିବାରୁ ଏହାକୁ କରଣପକ୍ଷୀ କହନ୍ତି । ଏହା ଆଫ୍ରିକା ମହାଦେଶର ପକ୍ଷୀ । ଏମାନେ ସାପକୁ ଦେଖିଲାକ୍ଷଣି ମାରି ଖାଆନ୍ତି । ଗୋଖର ତମ୍ପ ପରି ବିଷାକ୍ତ ସାପମାନଙ୍କୁ ଏମାନେ ସହଜରେ



ମାରି ପାରନ୍ତି । ଏଠାରେ ଦେଖ କରଣପକ୍ଷୀ ଗୋଟାଏ ସାପକୁ ଗୋଡ଼ରେ କେମନ୍ତ ମାଡି ଧରିଅଛି । ଏଦେଶରେ ମଧ୍ୟ କେତେକ ପକ୍ଷୀ ଅଛନ୍ତି ସେମାନେ ସାପ ଖାନ୍ତି । ହାଡ଼ଗିଲାମାନେ ଅନେକ ସାପ ଖାନ୍ତି । ବେଳେ ବେଳେ ମୟୂରମାନେ ସାନ୨ ସାପକୁ ମାରି ଖାଇବାର ଦେଖାଯାଏ । କରଣପକ୍ଷୀ ସାପକୁ ମାରି ତାହାକୁ ଖଣ୍ଡ୨ କରି ଖାଏ, ମାତ୍ର ହାଡ଼ଗିଲା ସାପକୁ ଦେଖିଲାକ୍ଷଣି ଧରି ଗିଳି ଦିଏ । ହାଡ଼ଗିଲାର ଗଳାରେ ଗୋଟିଏ ଥଳୀ ଅଛି । ହାଡ଼ଗିଲା ଯାହା ଖାଏ ତାହା ପ୍ରଥମ ସେହି ଥଳୀରେ ରହି ଜୀର୍ଣ୍ଣ

ହୁଏ । ହାଡ଼ଗିଳା ସାପକୁ ଗିଳି ପକାଇଲାକ୍ଷଣି ସାପ ସେହି ଥଳୀରେ ପଡ଼ି ଛଟପଟ ହୋଇ ମରିଯାଏ । କରଣପକ୍ଷୀ ସାନ ସାପକୁ ସହଜରେ ମାରି ଖାଏ; ମାତ୍ର କରଣ-ପକ୍ଷୀଠାରୁ ଯେଉଁ ସାପର ବଳ ଅଧିକ, କରଣପକ୍ଷୀ ତାହା ସଙ୍ଗେ ଯୁଦ୍ଧ କରେ । ସାପ ଯେତେବେଳେ ଅତ୍ୟନ୍ତ ବେଗରେ ଟେଙ୍କି ଫଣା ଟେକି କାମୁଡ଼ିବାକୁ ଉଠେ, କରଣପକ୍ଷୀ ଡାଲ ପରି ଗୋଟିଏ ଡେଣା ବିସ୍ତାର କରି ଆପଣାର ଶରୀରକୁ ରକ୍ଷା କରେ, ଏବଂ ଅନ୍ୟ ଡେଣାରେ ସାପକୁ ଏପରି ବଳରେ ଆଘାତ କରେ ଯେ ସାପର ଆଉ ଫଣା ଟେକିବାର ଶକ୍ତି ନ ଥାଏ । ତାହା ଉତ୍ତାରୁ କରଣପକ୍ଷୀ ସାପକୁ ଗୋଡ଼ରେ ମାଡି ଧରି ସାପର ମୁଣ୍ଡକୁ ଥଣ୍ଟରେ ଖଣ୍ଡ ଖଣ୍ଡ କରି ଦିଏ । କରଣପକ୍ଷୀ ପରି କୌଣସି ପକ୍ଷୀକୁ ସାପ ସଙ୍ଗେ ଯୁଦ୍ଧ କରିବାର ଦେଖାଯାଏ ନାହିଁ । କରଣପକ୍ଷୀ କଇଞ୍ଚିକୁ ମଧ୍ୟ ଏହିପରି ଡେଣା ଆଘାତରେ ମାରିପକାଏ ।

---

## ଖଡ୍ଗୀମତ୍ସ୍ୟ ।



ସମୁଦ୍ରରେ ଅନେକ ଖଡ୍ଗୀମତ୍ସ୍ୟ ଅଛନ୍ତି । ଏମାନଙ୍କ ମୁଖର ଅଗ୍ର-ଭାଗରେ ଖଣ୍ଡାଖୋଳ ପରି ଗୋଟିଏ ବୃହତ୍ ଦନ୍ତ ବାହାରି ଥାଏ, ଏଣୁ ଏହାକୁ ଖଡ୍ଗୀମତ୍ସ୍ୟ କହନ୍ତି । ଏହି ଦନ୍ତ ୫।୬ ହାତ ପର୍ଯ୍ୟନ୍ତ ଦୀର୍ଘ ହୁଏ । ଏହାର ଦନ୍ତ ହସ୍ତୀଦନ୍ତ-ଠାରୁ ଅଧିକ କଠିନ ଅଟେ । କୌଣସି କୌଣସି ଜାହାଜ ତଳେ ଏହାର ସମଗ୍ର ଦନ୍ତ ବିଦ୍ଧ ହୋଇ ଭାଙ୍ଗି ରହିଥିବାର ଦେଖାଯାଏ । ଏହି ମତ୍ସ୍ୟ ୧୭।୧୮ ହାତ ପର୍ଯ୍ୟନ୍ତ ଦୀର୍ଘ ହୁଏ ।

ତିମି ଏବଂ ଖଡ୍ଗୀମତ୍ସ୍ୟ ଦେଖାଦେଖି ହେଲାକ୍ଷଣି ଯୁଦ୍ଧରେ ପ୍ରବୃତ୍ତ ହୁଅନ୍ତି । ସର୍ବ-ପ୍ରଥମେ ଖଡ୍ଗୀମତ୍ସ୍ୟ ତିମିକୁ ଆକ୍ରମଣ କରେ । ଦୁଇଗୋଟି ଖଡ୍ଗୀମତ୍ସ୍ୟ ଏକତ୍ରିତ ହେଲେ ଗୋଟିଏ ତିମିକୁ ଅନାୟାସେ ମାରି ପକାନ୍ତି । ଯୁଦ୍ଧ ସମୟରେ ତିମି ଲାଞ୍ଜ କଡ଼ି ଆତ୍ମରକ୍ଷା କରେ । ତିମି ମୁଣ୍ଡ ତଳକୁ କରି ବୁଡ଼ିଯାଇ ଏପରି ବଳରେ ଲାଞ୍ଜରେ ଆଘାତ

କରେ ଯେ, ତାହାର ଗୋଟିଏ ଅଘାତ ଲାଗିଲାକ୍ଷଣି ଖଡ୍‌ଗୀମତ୍ସ୍ୟର ଦେହ ଖଣ୍ଡ ୨ ହୋଇଯାଏ; ମାତ୍ର ଖଡ୍‌ଗୀମତ୍ସ୍ୟ ସାବଧାନ ହୋଇ ଦୂରକୁ ପଳାଇ ଯାଇ ଆତ୍ମରକ୍ଷା କରେ । ତିମି ଭାସି ଉଠିଲାକ୍ଷଣି ଖଡ୍‌ଗୀମତ୍ସ୍ୟ ଦୂରରୁ ପାଣି ଉପରେ ବୁଡ଼ି ତିମି ପାଖକୁ ଆସି ଅତ୍ୟନ୍ତ ବେଗରେ ତିମି ଦେହରେ ଆପଣା ଖଡ୍‌ଗକୁ ବିନ୍ଧି ଦିଏ । ଯୋଡ଼ାଏ ଖଡ୍‌ଗୀମତ୍ସ୍ୟ ଏକତ୍ର ହୋଇ ପୁନଃ ୨ ବିନ୍ଧି ଅଳ୍ପ ସମୟ ମଧ୍ୟରେ ଗୋଟିଏ ତିମିକୁ ମାରି ପକାନ୍ତି । ତିମି ମରିଗଲେ ଖଡ୍‌ଗୀମତ୍ସ୍ୟ ଓ ମଗର ପ୍ରଭୃତି ତାହାର ମାଂସ ଖାନ୍ତି । ପୂର୍ବପୃଷ୍ଠାରେ ଦେଖ ଗୋଟିଏ ତିମିକୁ ଗୋଟିଏ ଖଡ୍‌ଗୀମତ୍ସ୍ୟ ଆପଣା ଖଡ୍‌ଗରେ କେମନ୍ତ ବିନ୍ଧୁଅଛି ।

ହସ୍ତୀଦନ୍ତରେ ଯେପରି ନାନାପ୍ରକାର ପଦାର୍ଥ ପ୍ରସ୍ତୁତ ହୁଏ, ଏମାନଙ୍କ ଖଡ୍‌ଗରେ ମଧ୍ୟ ସେହିପରି ନାନାପ୍ରକାର ପଦାର୍ଥ ପ୍ରସ୍ତୁତ ହୁଏ । ହସ୍ତୀଦନ୍ତଠାରୁ ଏହି ମତ୍ସ୍ୟର ଖଡ୍‌ଗରେ ନିର୍ମିତ ପଦାର୍ଥମାନ ଅଧିକ ଚିକ୍‌କଣ ଓ ପରିଷ୍କୃତ ହୁଏ ।

## ବର୍ଣ୍ଣ ।

ଭିନ୍ନ ୨ ପଦାର୍ଥର ବର୍ଣ୍ଣ ଭିନ୍ନ ୨ ପ୍ରକାର ଅଟେ । ରଙ୍ଗ, ନୀଳ ଓ ହଳଦିଆ ଏହି ତିନି ବର୍ଣ୍ଣକୁ ମୂଳବର୍ଣ୍ଣ କହନ୍ତି । ମନ୍ଦାର ଫୁଲ, ସିନ୍ଦୂର ଓ ଲାହାପାଣି ଦେଖିବାକୁ ରଙ୍ଗବର୍ଣ୍ଣ । ଅପରାଜିତା ନୀଳବର୍ଣ୍ଣର ଏବଂ କନିଅର ହଳଦିଆ ବର୍ଣ୍ଣର ଫୁଲ । ରଙ୍ଗ, ନୀଳ, ଏବଂ ହଳଦିଆ ଏହି ତିନି ବର୍ଣ୍ଣ ମିଶି ନାନା ପ୍ରକାର ବର୍ଣ୍ଣ ହୁଏ । ନାନା ପ୍ରକାର ବର୍ଣ୍ଣ ମିଶି ଧଳା ବର୍ଣ୍ଣ ହୁଏ । ଏକ ବର୍ଣ୍ଣଦ୍ୱାରା ଅନ୍ୟ ବର୍ଣ୍ଣ ନଷ୍ଟ ହେଲେ କଳା ବର୍ଣ୍ଣ ହୁଏ । ରଙ୍ଗ ପଦାର୍ଥ ସଙ୍ଗେ ନୀଳ ପଦାର୍ଥ ମିଶାଇ ଦେଲେ ପଦାର୍ଥର ବର୍ଣ୍ଣ ବାଇଗଣୀ ଏବଂ ରଙ୍ଗ ପଦାର୍ଥ ସଙ୍ଗେ ହଳଦିଆ ପଦାର୍ଥ ମିଶାଇ ଦେଲେ ବର୍ଣ୍ଣ ପାଟଳ ଅର୍ଥାତ୍ ଇଟା ପରି ହୁଏ । ନୀଳବର୍ଣ୍ଣର ପଦାର୍ଥ ଓ ହଳଦିଆ ବର୍ଣ୍ଣର ପଦାର୍ଥ ମିଶାଇ ଦେଲେ ବର୍ଣ୍ଣ ହରିତ ଅବା ଶାଗୁଆ ହୁଏ । ପୃଥିବୀରେ ଯେତେ ବର୍ଣ୍ଣର ପଦାର୍ଥ ଅଛି ତାହା ମଧ୍ୟରେ ଶାଗୁଆ ବର୍ଣ୍ଣର ପଦାର୍ଥ ଅଧିକ ।

ଗଛର ପତ୍ର, ଘାସ ପ୍ରଭୃତି ହରିତ୍‌ବର୍ଣ୍ଣ । ଦୁଇ ବର୍ଣ୍ଣର ଆଲୁଅ ମିଶିଲେ ମଧ୍ୟ ଆଲୁଅର ବର୍ଣ୍ଣ ଭିନ୍ନ ପ୍ରକାର ହୁଏ । ନୀଳବର୍ଣ୍ଣର ଆଲୁଅ ସଙ୍ଗେ ପୀତବର୍ଣ୍ଣର ଆଲୁଅ ମିଶିଲେ କିମ୍ବା ଲୋହିତ ବର୍ଣ୍ଣର ଆଲୁଅ ସଙ୍ଗେ ହରିଦ୍‌ବର୍ଣ୍ଣର ଆଲୁଅ ମିଶିଲେ ଶ୍ୱେତବର୍ଣ୍ଣର ଆଲୁଅ ହୁଏ । ମାତ୍ର ନୀଳପଦାର୍ଥ ସଙ୍ଗେ ପୀତ ପଦାର୍ଥ ମିଶିଲେ ହରିତ୍ ପଦାର୍ଥ ହୁଏ ।

ପ୍ରାକୃତିକ ଜ୍ଞାନ ।

ଲୁଣ ଓ କିରାସିନ ତେଲ ।

ସମୁଦ୍ରଜଳକୁ ହାଣ୍ଡିରେ ରଖି ଫୁଟାଇଲେ ଜଳ ବାଷ୍ପ ହୋଇ ଉଡ଼ିଯାଏ ଏବଂ ଲୁଣଗୁଡ଼ିକ ହାଣ୍ଡିରେ ରହେ । ତାହାକୁ ପରିଷ୍କାର କଲେ ଖାଇବା ଲୁଣ ହୁଏ । ସମୁଦ୍ରଜଳରୁ ଯେଉଁ ଲୁଣ ହୁଏ ତାହାକୁ ସାମୁଦ୍ରିକ ଲବଣ କହନ୍ତି । ସମୁଦ୍ରଜଳକୁ ସୂର୍ଯ୍ୟକିରଣରେ ଶୁଖାଇ କରକଚ ଲୁଣ ପ୍ରସ୍ତୁତ କରନ୍ତି । ଏ ଦେଶରେ ପଙ୍କା ଓ କରକଚ ଏହି ଦୁଇ ପ୍ରକାର ଲୁଣର ବ୍ୟବହାର ହେଉଅଛି । ଓଡ଼ିଶାର ଦକ୍ଷିଣରେ କରକଚ ଲୁଣ ପ୍ରସ୍ତୁତ ହୁଏ । ପୂର୍ବେ ଏ ଦେଶରେ ପଙ୍କାଲୁଣ ପ୍ରସ୍ତୁତ ହେଉଥିଲା । ବର୍ତ୍ତମାନ ଅନ୍ୟ ଦେଶରୁ ଏଦେଶକୁ ପଙ୍କାଲୁଣ ଆସୁଅଛି । ରାଜପୁତାନା ଦେଶରେ ସମ୍ବର ବୋଲି ଗୋଟିଏ ହ୍ରଦ ଅଛି । ସମ୍ବରହ୍ରଦ ଜଳରୁ ଯେଉଁ ଲୁଣ ପ୍ରସ୍ତୁତ ହୁଏ ତାହାକୁ ସମ୍ବର କହନ୍ତି । ଯେଉଁ ଲୁଣ ଖଣିରୁ ବାହାରେ ତାହାକୁ ଖନିଜ କହନ୍ତି । ଯେମନ୍ତ ସୈନ୍ଧବ ଲୁଣ କମ୍ବା ଚଟାଲୁଣ । ଇଉରୋପରେ ଲୁଣର ବୃହତ୍ ଖଣି ଅଛି । ଗୋଟିଏ ଖଣି ଏପରି ବୃହତ୍ ଯେ ଶତ ବର୍ଷ ହେଲା ସେଥିରୁ ଲୁଣ ବାହାରୁଅଛି, ମାତ୍ର ତାହା ଶେଷ ହୋଇ ନାହିଁ । ଶତ ଶତ ବ୍ୟକ୍ତି ଖଣି ମଧ୍ୟରେ ପୁରୁଷ ଅନୁକ୍ରମେ ଘର କରି ରହୁଅଛନ୍ତି । ଏଠାରେ ଗୋଟିଏ ଲବଣଖଣିର ଚିତ୍ର ଦିଆ ହୋଇଅଛି । ଦେଖ ଦୁଇଜଣ ମନୁଷ୍ୟ କାଙ୍କ ଘେନି କେମନ୍ତ ଲୁଣ ଖୋଳୁଅଛନ୍ତି । ଲବଣଖଣି ମଧ୍ୟରେ ମାଟି ନ ଥାଏ ଏଥିର ସମସ୍ତ ଲବଣମୟ ଅଟେ । ଏଣୁ ଖଣି ମଧ୍ୟସ୍ଥ ଘର ସଡ଼କ ପ୍ରଭୃତି ସମସ୍ତ ଲୁଣରେ ପ୍ରସ୍ତୁତ ହୁଏ ।



ଖନିଜ ଲୁଣ ପରି କିରାସିନ ତେଲ ଖଣିରୁ ବାହାରେ । ମାତ୍ର ଲୁଣଖଣି ପରି କିରାସିନ ତେଲର ବୃହତ୍ ଖଣି ହୁଅଇ ନାହିଁ । କିରାସିନ ତେଲର ଖଣି ବାଙ୍ଫି ପରି ହୁଏ । ବ୍ରହ୍ମଦେଶ, ପଞ୍ଜାବ, ରୁଷିଆ ଆମେରିକା ପ୍ରଭୃତି ଦେଶରେ କିରାସିନ ତେଲର ଖଣି ଅଛି । ଖଣିରୁ ଯେଉଁ ତେଲ ବାହାରେ ତାହା ପରିଷ୍କାର ନ ଥାଏ ।

ମାଧାବଣରେ ତାହାଙ୍କୁ ମାଠିଆ ଦେବେ କହନ୍ତି । ତାହାଙ୍କୁ ପରୀକ୍ଷା କରି ସେ ହିନ୍ଦୁମାନେ ପୂରାଇ ଅନ୍ୟ ଦେଶକୁ ପଠାନ୍ତି ।

---

ଖଳ ଲୋକ ।

ଖଳଲୋକ ନିଜ କାହାର ନୁହେଁ, ସ୍ୱାର୍ଥନିମିତ୍ତ ମିତ୍ରତା ଦେଖାଏ ।
କୂଟ କପଟକୁ ପୂରାଇ ମନେ, ବଚନ କହେ ଅମୃତ ସମାନେ ।
ଉଦରେ କରେ ଅନ୍ନ ପାଞ୍ଚ ପ୍ରଣ, ବାହାର ଗୋଟିଏ ଦୁଗ୍ଧାନ୍ନ ଗୁଣ ।
କୁମ୍ଭ ଗୋଟାକରେ ପୂରାଇ ବିଷ, ଉପରେ ଦେଲା ପଦ୍ମ ମୁଁ ଶୋଭଯ ।
ଭିତରେ କି ଅଛି ଜାଣି ନ ପାରି ନିଶ୍ଚୟ ଖାଇଲେ ଆରମ୍ଭ ମଦ ।
ଏହି ପ୍ରକାରେ ଦୁଷ୍ଟଲୋକମାନେ, ପ୍ରାଣିଙ୍କ ମାରନ୍ତି ସ୍ନେହ ବଚନେ ।
ଯେବଣ ଲୋକର ଏତେ ଦୁର୍ଗୁଣ, ନିଜ ଲୋକେ ତାକୁ କରିବ ବର୍ଜନ ।

---

ମନୁଷ୍ୟଶରୀର ।

ମନୁଷ୍ୟଶରୀର ମୁଣ୍ଡ, ଅବୟବ ଓ ଅଙ୍ଗ ଏହି ତିନି ଭାଗରେ ବିଭକ୍ତ । ଶରୀରର ଉପରିଭାଗରେ ମୁଣ୍ଡ ରହିବାରୁ ଆମ୍ଭେମାନେ ଉପରକୁ, ତଳକୁ, ଆଗକୁ, ପଛକୁ, ଏବଂ ପାଖକୁ ଯେତେବେଳେ ଯେଉଁ ଆଡ଼କୁ ପ୍ରୟୋଜନ ହୁଏ ମୁଣ୍ଡ ବୁଲାଇ ଦେଖିପାରୁଁ । କରୋଟି ଓ ବଦନ ଏହି ଦୁଇଭାଗରେ ମୁଣ୍ଡ ବିଭକ୍ତ । କରୋଟି ମଧ୍ୟରେ ମସ୍ତିଷ୍କ ଥାଏ । ମସ୍ତିଷ୍କ ଚାରିପାଖରେ କରୋଟି ଖୋଳ ପରି ହୋଇ ରହିଅଛି । ଯେଉଁ ବ୍ୟକ୍ତିର ମସ୍ତିଷ୍କ ଅଧିକ, ସେ ଅଧିକ ବୁଦ୍ଧିମାନ୍ ହୁଏ । କପାଳ ବ୍ୟତୀତ କରୋଟିର ଅନ୍ୟାନ୍ୟ ଅଂଶ ବାଳରେ ଆବୃତ । ବଦନରେ ଚକ୍ଷୁ, କର୍ଣ୍ଣ, ଭ୍ରୂ, ନାକ, ଗାଲ ଏବଂ ଓଷ୍ଠ ଅଛି । ଆଖିପତା ଥିବାରୁ ଅଧିକ ଆଲୁଅ ଅବା ପବନରେ ଆମ୍ଭମାନଙ୍କ ଆଖିର ଅନିଷ୍ଟ ହୁଏ ନାହିଁ । ଆଖିପତାରେ ବାଳ ଥିବାରୁ ଧୂଳି ଓ ପୋକ ହଠାତ୍ ଆଖିରେ ପଡ଼ି ପାରନ୍ତି ନାହିଁ । ଭ୍ରୂ ଥିବାରୁ ମୁଣ୍ଡର ଝାଳ ଆଖିକୁ ବହି ଆସି ପାରେ ନାହିଁ । ନାକ ଦୁଇଭାଗରେ ବିଭକ୍ତ । ପ୍ରତ୍ୟେକ ଭାଗକୁ ନାସାରନ୍ଧ୍ର କହନ୍ତି । ଦାନ୍ତକୁ ଓଷ୍ଠ ଘୋଡ଼ାଇ ରଖିଅଛି । ଓଷ୍ଠ ନ ଥିଲେ ଅମ୍ଭେମାନେ କଥା କହି ପାରନ୍ତୁ ନାହିଁ ଓଷ୍ଠ ଥିବାରୁ

ଖାଇବା ଓ ପିଇବା ପଦାର୍ଥ ପାଟିରୁ ବାହାର ପଡ଼େ ନାହିଁ । ଆମ୍ଭମାନଙ୍କ ବତିଶ ଗୋଟି ଦନ୍ତ ଅଛି । ପିଲାଦିନରେ ସବୁ ଦନ୍ତ ବାହାରେ ନାହିଁ । କାଏ କପଟ ମନୁଷ୍ୟ କେବଳ ବଦନରୁ ତାହା ଅନେକ ଜଣା ପଡ଼େ ।

ବେକଠାରୁ ପିଚ୍ଛ ପର୍ଯ୍ୟନ୍ତ ଶରୀରର ଅଂଶକୁ ଅବୟବ କହନ୍ତି । ବେକଠାରୁ ପିଚ୍ଛ ପର୍ଯ୍ୟନ୍ତ ଗଣ୍ଠି ଦେଲା ପରି କେତେକ ଖଣ୍ଡ ହାଡ ଯୋଡା ହୋଇ ରହିଅଛି; ତାହାକୁ ମେରୁଦଣ୍ଡ କହନ୍ତି । ମେରୁଦଣ୍ଡ ସଙ୍ଗେ ହାତ ଗୋଡ଼ ଓ ପଞ୍ଜରା ହାଡ଼ମାନ ଲାଗି ହୋଇଅଛି । ଅବୟବର ପଛପାଖକୁ ପୃଷ୍ଠ ଅବା ପିଠି କହନ୍ତି । ଅବୟବର ସମ୍ମୁଖପାଖ ଛାତି, ପେଟ ଓ ତଳପେଟ ଏହି ତିନିଭାଗରେ ବିଭକ୍ତ । ଊର୍ଦ୍ଧ୍ୱ ଅବା ଉପର ଅଂଶକୁ ସ୍କନ୍ଧ ଅବା କାନ୍ଧ ଏବଂ ଦୁଇପାଖକୁ କାଖ କହନ୍ତି । ଆମ୍ଭେମାନେ ଯାହା ଖାଉଁ ଅବା ପାନ କରୁଁ ତାହାର ସାରଅଂଶ ସବୁ ଅଙ୍ଗକୁ ଯାଏ । ତାହା ହେଉ ନ ଥିଲେ ହାତ କୌଣସି କାର୍ଯ୍ୟ କରି ପାରୁ ନ ଥାନ୍ତା ଏବଂ ପାଦ ଚାଲି ପାରୁ ନ ଥାନ୍ତା ।

ହାତ, ଗୋଡ଼, ଅଙ୍ଗୁଳି ପ୍ରଭୃତିକୁ ଅଙ୍ଗ କହନ୍ତି । ବାହୁରେ ତିନି ଖଣ୍ଡି ହାଡ଼ ଅଛି । କାନ୍ଧଠାରୁ କହୁଣି ପର୍ଯ୍ୟନ୍ତ ଖଣ୍ଡିଏ ଏବଂ କହୁଣିଠାରୁ କବ୍ଜା ପର୍ଯ୍ୟନ୍ତ ଦୁଇ ଖଣ୍ଡି ହାଡ଼ ଅଛି । ହାତରେ ୨୭ ଖଣ୍ଡ ହାଡ଼ ଅଛି । ହାତ ପାପୁଲିରେ ୧୩ ଖଣ୍ଡି ଏବଂ ବୃଦ୍ଧାଙ୍ଗୁଳିରେ ଦୁଇ ଖଣ୍ଡି ଓ ଅନ୍ୟାନ୍ୟ ଅଙ୍ଗୁଳିର ପ୍ରତ୍ୟେକ ଅଙ୍ଗୁଳିରେ ତିନିଖଣ୍ଡି । ଦୁଇ ହାତର ହାଡ଼କୁ ଏକାଠି କଲେ ୬୦ ଖଣ୍ଡି ହେବ । ଦୁଇବାହୁକୁ ଊର୍ଦ୍ଧ୍ୱାଙ୍ଗ ଓ ଦୁଇ ଗୋଡକୁ ନିମ୍ନାଙ୍ଗ କହନ୍ତି । ଊର୍ଦ୍ଧ୍ୱାଙ୍ଗରେ ହାଡ଼ର ପରିମାଣ ଅଧିକ, ମାତ୍ର ମାଂସର ପରିମାଣ ଅଳ୍ପ ଅଟେ ।

ପିଚ୍ଛଠାରୁ ଗୋଡ଼ତଳ ପର୍ଯ୍ୟନ୍ତକୁ ନିମ୍ନାଙ୍ଗ କହନ୍ତି । ଏହାର ଏକ ଏକ ଅଂଶକୁ ଜଙ୍ଘ, ଜାନୁ, ଗୋଇଠି, ପାଦ, ଅଙ୍ଗୁଳି, କହନ୍ତି । ଜଙ୍ଘରେ ଖଣ୍ଡିଏ, ଜାନୁରେ ଦୁଇଖଣ୍ଡି, ପାଦରେ ୨୬ ଖଣ୍ଡି, ଏବଂ ଆଣ୍ଠୁରେ ଖଣ୍ଡିଏ ହାଡ଼ ଅଛି । ପ୍ରତ୍ୟେକ ଗୋଡ଼ରେ ୩୦ ଖଣ୍ଡି ଏବଂ ଦୁଇ ଗୋଡ଼ରେ ୬୦ ଖଣ୍ଡି ହାଡ଼ ଅଛି । ଊର୍ଦ୍ଧ୍ୱାଙ୍ଗ ପରି ନିମ୍ନାଙ୍ଗରେ ହାଡ଼ ଅଛି ସତ୍ୟ, ମାତ୍ର ସେମାନେ ସେପରି ଦୃଢ଼ ନୁହନ୍ତି । ଆମ୍ଭେମାନେ ଯେଉଁ ଆଡ଼କୁ ଇଚ୍ଛା ସେହି ଆଡ଼କୁ ହାତ ବୁଲାଇ ପାରୁଁ, ମାତ୍ର ଗୋଡ଼କୁ ସେହିପରି କରି ନ ପାରୁଁ । ହାତରେ କୌଣସି ପଦାର୍ଥକୁ ମୁଠାଇ ପାରୁଁ, ଛୁଞ୍ଚ ପରି କୌଣସି କ୍ଷୁଦ୍ରପଦାର୍ଥକୁ ଟେକି ନେଇ ପାରୁଁ, ମାତ୍ର ପାଦରେ ସେପରି ହୋଇ ନ ପାରେ ।

ଖଣ୍ଡାଦ୍ୱାରା ଶରୀରର ଏକ ଅଂଶ ଅନ୍ୟ ଅଂଶ ସଙ୍ଗେ ଯୁକ୍ତ ହୋଇଅଛି । ଆମ୍ଭମାନଙ୍କ ଶରୀରରେ ପ୍ରାୟ ଦେଢ଼ଶତ ଖଣ୍ଡାଅଛି । କୌଣସି ଖଣ୍ଡା ଚାରି ଆଡ଼କୁ, କୌଣସି ଖଣ୍ଡା ଏକ ଆଡ଼କୁ ଘୂରଇ, କୌଣସି ୨ ଖଣ୍ଡା କୌଣସି ଆଡ଼କୁ ଘୂରଇ ନାହିଁ ।

ଦାନ୍ତକୁ ଛାଡ଼ି ମନୁଷ୍ୟ ଦେହରେ ୨୭୩ ଖଣ୍ଡ ହାଡ଼ ଅଛି । ଆମ୍ଭମାନଙ୍କ ଦେହରେ ଯେତେ ହାଡ଼ ଅଛି ତାହା ମଧ୍ୟରେ ଦାନ୍ତ ସବୁଠାରୁ କଠିନ । ଅଳ୍ପବୟସର ପିଲମାନଙ୍କ ହାଡ଼ କୋମଳ ଅଟେ । ପିଲମାନଙ୍କର ଅନେକ ହାଡ଼ ଅଲଗା ଥାଏ । ହାଡ଼ କଠିନ ନ ହେଲେ ପିଲମାନେ ଦୌଡ଼ି ପାରନ୍ତି ନାହିଁ ।

---

## ବାଘ ଓ ମୂଷା ।

କପିଳାସ ପାଖ ବଣରେ ଗୋଟାଏ ବାଘ ଥିଲା । ଦିନେ ବାଘ ଗୋଟାଏ ଗଛମୂଳେ ଶୋଇଥିଲାବେଳେ, ଗୋଟାଏ ମୂଷା ସେହି ଗଛ ଡାଳରେ ଯାଉଁ ୨ ବାଘର ମୁଣ୍ଡ ଉପରେ ଖସି ପଡ଼ିଲା । ନିଦ ଭାଙ୍ଗିଯିବାରୁ ବାଘ କ୍ରୁଦ୍ଧ ହୋଇ ମୂଷାକୁ ମାରିବାକୁ ବସିଲା । ମୂଷା ପ୍ରାଣଭୟରେ ହାତ ଯୋଡ଼ି କହିଲା—"ମଣିମା, ମୁଁ ନ ଜାଣି ଅପରାଧ କରିଅଛି, କ୍ଷମା କରନ୍ତୁ; ମୋ ପରି କ୍ଷୁଦ୍ରଜୀବକୁ ମାରିଲେ ମଣିମାଙ୍କର କୌଣସି ଲାଭ ହେବ ନାହିଁ ।" ଏହା ଶୁଣି ବାଘ ମୂଷାକୁ ଛାଡ଼ି ଦେଲା ।



ଦିନେ ବାଣୁଆମାନେ, ସେହି ବାଘକୁ ଧରିବା ସକାଶେ ଜାଲ ବସାଇବାରୁ ବାଘ ଜାଲରେ ପଡ଼ିଲା । ବାଘ ଜାଲରୁ ବାହାରି ନ ପାରି କ୍ରୋଧରେ ଘୋର ଗର୍ଜ୍ଜନ କଲା ।

ସେହି ଗର୍ଜ୍ଜନ ଶୁଣି ମୂଷା ବାଘ ପାଖକୁ ଦଉଡ଼ିଗଲା ଏବଂ ଜାଲ ଦଉଡ଼ି କାଟି ଦେଇ ବାଘକୁ ମୁକ୍ତ କଲା । ବାଘ ସେଠାରୁ ଗଲାବେଳେ ମନେ୨ ଚିନ୍ତା କଲା—"ମୁଁ ମୂଷାକୁ ନ ମାରି ପ୍ରାଣରକ୍ଷା କରିଥିଲି ବୋଲି, ଆଜି ମୋର ପ୍ରାଣରକ୍ଷା ହେଲା । ଉପକାର କଲେ ସାମାନ୍ୟ ଲୋକଠାରୁ ମଧ୍ୟ ପ୍ରତ୍ୟୁପକାର ମିଳଇ ।"

---

## ବିଭର ।

ଅମେରିକାର ଉତ୍ତରପ୍ରଦେଶରେ ଅନେକ ବିଭର ଦେଖାଯାନ୍ତି । ବିଭର ଚର୍ମରେ ଅତି ସୁନ୍ଦର ଟୋପି ପ୍ରଭୃତି ପ୍ରସ୍ତୁତ ହୁଏ । ଏମାନେ ଯେପରି ଗୃହ ପ୍ରଭୃତି ପ୍ରସ୍ତୁତ କରନ୍ତି ଜନ୍ତୁମାନଙ୍କ ମଧ୍ୟରେ ଅନ୍ୟ କୌଣସି ଜନ୍ତୁ ସେପରି କରନ୍ତି ନାହିଁ । ବିଭରମାନେ ଗ୍ରୀଷ୍ମକାଳରେ ଗର୍ତ୍ତ ତ୍ୟାଗ କରି ନୂଆ ଗୃହ ନିର୍ମାଣ କରନ୍ତି । ଏମାନେ ଦଳବଦ୍ଧ ହୋଇ ରହନ୍ତି । ଗୋଟିଏ୨ ଦଳରେ ଦୁଇ ତିନି ଶତ ବିଭର ଦେଖାଯାନ୍ତି ।



ବିଭରମାନେ ନଦୀକୂଳରେ ରହିବାକୁ ସୁଖ ପାଆନ୍ତି । ଏମାନେ ଅଳ୍ପ ସମୟ ମଧ୍ୟରେ ବଡ଼୨ ଗଛ କାଟି ପକାନ୍ତି । ନଦୀକୂଳରେ ବଡ଼ ଗଛ ଥିଲେ ସେମାନେ ତାହାକୁ ଦାନ୍ତରେ ଏପରିଭାବରେ କାଟନ୍ତି ଯେ ତାହା ନଦୀଜଳରେ ପଡ଼େ । ନଦୀକୂଳରେ ଗଛ ନ ଥିଲେ ବିଭରମାନେ ଗଛକୁ ଖଣ୍ଡ୨ କରି କାଟି ନଦୀକୂଳକୁ ଦାନ୍ତରେ ଓଟାରି ନେଇ ଯାନ୍ତି । ତହିଁ ଉତ୍ତାରୁ ତାହାକୁ ନଦୀସ୍ରୋତରେ ଭସାଇ ଗୃହ କରିବା ସ୍ଥାନକୁ

ଘେନି ଅସନ୍ତି । ଅନେକ ଗଛ କାଟି ଦେଲେ ସେମାନେ ସେହି ଗଛମାନଙ୍କଦ୍ୱାରା ନଦୀରେ ଗୋଟିଏ ବନ୍ଧ ଦିଅନ୍ତି । ଏହି ବନ୍ଧରେ ନଦୀ ସ୍ରୋତ ବନ୍ଦ ହୋଇ ଗୋଟିଏ ଗଭୀର ପୋଖରୀ ତିଆରି ହୁଏ । ବନ୍ଧ ବାନ୍ଧିବା ଲାଗି ସେମାନେ ନଦୀ ମଧ୍ୟରେ ଗୁଣ୍ଡି-ମାନ କ୍ରମାନ୍ୱୟରେ ପୋତି ଦିଅନ୍ତି । ବନ୍ଧର କୌଣସି ସ୍ଥାନରୁ ପାଣି ଝରୁଥିଲେ ଏମାନେ ସେହି ସ୍ଥାନରେ କାଦୁଅ ଓ ପଥର ଦେଇ ତାହା ବନ୍ଦ କରନ୍ତି କାଦୁଅକୁ ଚିକ୍କଣ କରିବା ସକାଶେ ଏମାନେ ତାହା ଉପରେ ଲାଞ୍ଜ ଚଳାନ୍ତି । ଏମାନେ ଆଗ ଦୁଇଗୋଡ଼ ଓ ଥୋମଣିରେ କାଦୁଅ ଧରି ବହି ଆଣନ୍ତି । ଅଧିକ ଆଶ୍ଚର୍ଯ୍ୟର ବିଷୟ ଏହି ଯେ ଏମାନେ ସମସ୍ତ କାର୍ଯ୍ୟ ରାତିରେ କରନ୍ତି । ବନ୍ଧ ନିର୍ମାଣ ଶେଷ ହେଲେ ବିଭରମାନେ ଗୃହନିର୍ମାଣ କାର୍ଯ୍ୟ ଆରମ୍ଭ କରନ୍ତି ।

ବନ୍ଧ ଯେପରି ଭାଙ୍ଗି ନ ଯିବ କିମ୍ବା ବନ୍ଧରୁ ଯେପରି ପାଣି ନ ଝରିବ ସେଥିସକାଶେ ସେମାନେ ସବୁବେଳେ ସତର୍କ ଥାନ୍ତି । ବନ୍ଧ ଭାଙ୍ଗିଗଲେ ତାହାକୁ ପୁଣି ସଂସ୍କାର ନ କରି ସ୍ଥିର ହୁଅନ୍ତି ନାହିଁ । ବିଭରମାନଙ୍କ ଗୃହଦ୍ୱାର ପାଣି ଭିତରେ ଥାଏ । ବିଭରମାନେ ଡୁବ ଦେଇ ଜଳରେ ବୁଡି ଆପଣା ଘରଭିତରକୁ ଯାଆନ୍ତି । ପ୍ରତିଗୃହରେ ଦଶ ପନ୍ଦର ଗୋଟି ବିଭର ବାସ କରନ୍ତି । ପ୍ରତିଗୃହ ଦୁଇ ପ୍ରସ୍ଥ ହୋଇ ପ୍ରସ୍ତୁତ ହୁଏ । ଉପର ପ୍ରସ୍ଥରେ ବିଭରମାନେ ରହନ୍ତି, ତଳପ୍ରସ୍ଥରେ ଖାଇବା ପଦାର୍ଥମାନ ସଞ୍ଚିତ ଥାଏ । ଏମାନେ ଗଛର ବକ୍କଳ ଖାଇ ବଞ୍ଚନ୍ତି । ଦିନବେଳେ ବିଭରମାନେ ଆପଣା ଗୃହ ମଧ୍ୟରେ ଲୁଚି ରହନ୍ତି । ଯେଉଁମାନେ ବିଭର ଧରନ୍ତି ସେମାନେ ବିଭରମାନଙ୍କ ଦ୍ୱାରା ନଦୀରେ ଦେଇଥିବା ବନ୍ଧ ଭାଙ୍ଗି ଦିଅନ୍ତି; ବନ୍ଧପ୍ରସ୍ତୁତ କରିବା ସକାଶେ ବିଭର-ମାନେ ବାହାର ଆସିଲେ ସେମାନଙ୍କୁ ଧରନ୍ତି ।

---

## ଠେକୁଆ ଓ ବେଙ୍ଗ ।

ମହାନଦୀକୂଳ ଅଠଗଡ଼ ବଣରେ କେତେଗୁଡ଼ିଏ ଠେକୁଆ ଥିଲେ । ସେମାନେ ଦିନେ ଏକତ୍ର ହୋଇ ଆପଣା ମଧ୍ୟରେ ଏହିପରି ବିଚାର କଲେ ଯେ—"ଆମ୍ଭେମାନେ ଘାସ ପତ୍ର ଖାଇ ବଞ୍ଚୁ, କାହାରି କୌଣସି ଅନିଷ୍ଟ କରୁ ନାହିଁ, ମାତ୍ର ଦୁଃଖର କଥା ଦେଖ ବାଘ, ବିଲୁଆ, କୁକୁର, ବଣିଆକାଙ୍କ, ସାପ, ମନୁଷ୍ୟ ପ୍ରଭୃତି ସମସ୍ତେ ଆମ୍ଭ-

ମାନଙ୍କୁ ଦେଖିଲାକ୍ଷଣି ମାରିବାର ଚେଷ୍ଟା କରନ୍ତି । ଆମ୍ଭମାନଙ୍କ ସକାଶେ କାହାର ହୃଦୟରୁ ଦୟା ହେଲେ ଉପୁଜେ ନାହିଁ । ଆମ୍ଭମାନଙ୍କ ପରି ଦୁଃଖୀ ଓ ହୀନଜୀବ ସଂସାରରେ ଆଉ ନାହାନ୍ତି । ଏ ଛାର ପ୍ରାଣ ରଖିଲେ ଆଉ କି ହେବ ? ଚାଲ ସମସ୍ତେ ଯାଇଁ ମହାନଦୀରେ ବୁଡ଼ି ମରିବା ।"



ଏହା ବିଚାର କରି ସମସ୍ତେ ନଦୀକୂଳକୁ ଦଉଡ଼ି ଯାଇ ଦେଖିଲେ, ନଦୀକୂଳରେ ଥିବା କେତେଗୁଡ଼ିଏ ବେଙ୍ଗ ସେମାନଙ୍କୁ ଦେଖି ଭୟରେ ଅସ୍ଥିର ହୋଇ ପାଣିକୁ ଡେଇଁ ପଡୁଅଛନ୍ତି । ଏହା ଦେଖି ଗୋଟିଏ ବୃଦ୍ଧ ଠେକୁଆ ସମସ୍ତଙ୍କୁ କହିଲା— ଦେଖ, ଅମ୍ଭେମାନେ ଆପଣାକୁ ଜୀବ ମଧ୍ୟରେ ସବୁଠାରୁ ହୀନ ଜ୍ଞାନ କରିଥିଲୁଁ, ମାତ୍ର ଅମ୍ଭମାନଙ୍କଠାରୁ ମଧ୍ୟ ହୀନଜୀବ ଅଛନ୍ତି । ନ ବୁଝି ସମସ୍ତେ ଆପଣା ଅବସ୍ଥାକୁ ହୀନ ଜ୍ଞାନ କରନ୍ତି ।" ତାହା ଶୁଣି ଠେକୁଆମାନେ ବଣକୁ ଲେଉଟି ଗଲେ ।

---

## ଓଟପକ୍ଷୀ ।

ଅଫ୍ରିକା ମହାଦେଶରେ ଏବଂ ଆରବ ଦେଶରେ ଅନେକ ଓଟପକ୍ଷୀ ଅଛନ୍ତି । ପୃଥିବୀରେ ଯେତେ ପ୍ରକାର ପକ୍ଷୀ ଅଛନ୍ତି ଓଟପକ୍ଷୀ ସବୁଠାରୁ ବୃହତ୍ । ଏମାନେ ଉଚ୍ଚରେ ପ୍ରାୟ ସାତ ହାତ ପର୍ଯ୍ୟନ୍ତ ହୁଅନ୍ତି । ଓଟପକ୍ଷୀ ବାଲୁକାମୟ ମରୁଭୂମିରେ ଦଳବଦ୍ଧ ହୋଇ ବାସ କରନ୍ତି । ଗୋଟିଏ୨ ଦଳରେ ଦୁଇ ତିନି ଶତ ପକ୍ଷୀ ଥାନ୍ତି । ଚାରି ପାଞ୍ଚଗୋଟି ଓଟପକ୍ଷୀର ୫୦ ଅବା ୬୦ ଗୋଟି ଶାବକ ଏକତ୍ର ପାଳିତ ହୁଅନ୍ତି ବଡ଼ ଓଟପକ୍ଷୀ ଶାବକମାନଙ୍କୁ ଘେନି ବୁଲୁଥାଏ, ମାତ୍ର ଶିକାରମାନଙ୍କୁ ଆସୁଥିବାର ଦେଖିଲେ ଶାବକମାନଙ୍କୁ ବାଲିରେ ଲୁଚାଇ ସେମାନଙ୍କଠାରୁ ଦୂରକୁ ଯାଇ ଲେଙ୍ଗଡ଼ା ହେଲା ପରି ଚାଲେ । ଶିକାରମାନେ ତାହାକୁ ଧରିବା ସକାଶେ ଯେତେ ପାଖକୁ ଯାନ୍ତି ସେ ତେତେ ଦୂରକୁ ଯାଉଥାଏ । ଏହାପରେ ଶିକାରମାନଙ୍କୁ ଅଧିକ ଦୂରକୁ ଘେନି ଯାଇ, ପୁଣି ଶାବକମାନଙ୍କ ପାଖକୁ ଚାଲି ଆସେ ।

ଓଟପକ୍ଷିମାନେ ଫଳ, ମୂଳ, ପୋକ, ଛୋଟ ସାପ, ବାଲି ଓ କଙ୍କର ପ୍ରଭୃତି ଖାନ୍ତି । ଏମାନେ ଅନେକ ଦୂରରୁ ଦେଖି ପାରନ୍ତି ଓ ଶୁଣି ପାରନ୍ତି ଓଟପକ୍ଷୀ ଯାହା ଖାଏ ତାହା ସ୍ୱାଦୁ କିମ୍ବା ନା ନାହିଁ ଏହା ବୁଝେ ନାହିଁ । ଏମାନଙ୍କ ଆଗିରେ ଯାହା ପଡେ ତାହା ଖାଇ ଉଦର ପୂର୍ଣ୍ଣ କରନ୍ତି । ଏକ ସାହେବ ଗୋଟିଏ ଓଟପକ୍ଷୀ ପାଳିଥିଲେ । ସେହି ପକ୍ଷୀ ଯେତେବେଳେ ଯାହା ପାଉଥିଲା ତାହା ଗିଳି ପକାଉଥିଲା । ଉକ୍ତ ସାହେବ ସେହି ପକ୍ଷିକୁ ପ୍ରତ୍ୟହ ପ୍ରାତଃକାଳରେ କେତେକ ଖଣ୍ଡ କାଗଜ ଖାଇବାକୁ ଦେଉଥିଲେ । ଖଣ୍ଡିଏ କାଠ, ଲୁହା ଅବା ଅନ୍ୟ କୌଣସି ଧାତୁ ପଦାର୍ଥ ଦେଲେ ମଧ୍ୟ ଉକ୍ତ ପକ୍ଷୀ ଖାଉଥିଲା । ଦିନେ ସେହି ପକ୍ଷୀ କେତେଗୁଡ଼ିଏ ପାଉଣ୍ଡ ଝୁଆଙ୍କୁ ଗିଳି ଦେଇଥିଲା ।

ଓଟପକ୍ଷିର ଡେଣା ଅତ୍ୟନ୍ତ କ୍ଷୁଦ୍ର, ଏଣୁ ଏମାନେ ଉଡି ପାରନ୍ତି ନାହିଁ । ମାତ୍ର ଏମାନେ ଘୋଡାଠାରୁ ଅଧିକ ବେଗରେ ଦୌଡ଼ିପାରନ୍ତି । ଓଟପକ୍ଷୀ ଘଣ୍ଟାରେ ଢେର କୋଶ ଯାଇପାରେ । ଶିକାରିମାନେ ଘୋଡ଼ାରେ ଚଢ଼ି ଓଟପକ୍ଷୀ ଶିକାର କରିବାକୁ ଯାନ୍ତି । ଶିକାରିମାନଙ୍କୁ ଦେଖିଲାକ୍ଷଣି ଓଟପକ୍ଷିମାନେ ଅତ୍ୟନ୍ତ ବେଗରେ ପଳାନ୍ତି । ଶିକାରିମାନେ ସେମାନଙ୍କ ପଛେ ପଛେ ଅନେକ ଦୂର ଗଲେ ଓଟପକ୍ଷିମାନେ ହତବୁଦ୍ଧି ହୋଇ ଗୃହାଭିମୁଖକୁ ପଳାନ୍ତି । କୌଣସି ପକ୍ଷୀ ହତବୁଦ୍ଧି ହୋଇ ଶିକାରିମାନଙ୍କ ମଧ୍ୟକୁ ଚାଲି ଆସେ । କୌଣସି ପକ୍ଷୀ ଅବା ଶିକାରିମାନଙ୍କ ପାଖ ଦେଇ ପଳାଇ ଯିବାବେଳେ ଶିକାରିମାନେ କେହି ବନ୍ଧୁକଗୁଳିରେ, କେହି କାଣ୍ଡରେ, କେହି ଠେଙ୍ଗାରେ, କେହି ଅବା ବର୍ଚ୍ଛାରେ ତାହାକୁ ମାରି ପକାନ୍ତି । ଥରେ ଏକ ସାହେବ ଗୋଟାଏ ଓଟପକ୍ଷିର ପଛେ ପଛେ ଗୋଡ଼ାଇ ମାରି ନ ପାରି, ତାହାକୁ ଧରିବା ସକାଶେ କୁକୁର ଲଗାଇ ଦେଲେ । କୁକୁର ଓଟପକ୍ଷୀ ପାଖକୁ ଗଲାକ୍ଷଣି ଓଟପକ୍ଷୀ ଗୋଡ଼ରେ ଏପରି ଅଘାତ କଲା ଯେ କୁକୁରର ମେରୁଦଣ୍ଡ ଭାଙ୍ଗିଗଲା ।

ଅଫ୍ରିକା ଦେଶର ଲୋକେ ଓଟପକ୍ଷୀ ଧରି ପାଳନ୍ତି । ପୋଷା ଓଟପକ୍ଷୀ ମନୁଷ୍ୟପିଲଙ୍କୁ ପିଠିରେ ଘେନି ଏକସ୍ଥାନରୁ ଅନ୍ୟସ୍ଥାନକୁ ଯାଏ । ଅଫ୍ରିକା ଦେଶର ଅସଭ୍ୟଲୋକମାନେ ଓଟପକ୍ଷୀର ଚର୍ମ ଘୋଡ଼ି ହୋଇ, ଯେଉଁ ସ୍ଥାନରେ ଓଟପକ୍ଷୀମାନେ ବୁଲୁଥାନ୍ତି ସେହି ସ୍ଥାନକୁ ଯାନ୍ତି । ଓଟପକ୍ଷିମାନେ ପାଖକୁ ଆସିଲାକ୍ଷଣି ଉକ୍ତ ମନୁଷ୍ୟ ଗୋଟିଏ ପକ୍ଷିକୁ କାଣ୍ଡ ମାରେ । ଗୋଟିଏ ପକ୍ଷୀ ଦେହରେ କାଣ୍ଡ ବାଜିଲେ ଅନ୍ୟାନ୍ୟ ପକ୍ଷି-



ମାନେ ପଳାଇ ଯାନ୍ତି । କେହି ଅବା ଯେଉଁ ସ୍ଥାନରେ ଓଟପକ୍ଷୀ ଅଣ୍ଡା ଦେଇଥାଏ ସେହି ସ୍ଥାନକୁ ଯାଇ ଲୁଚି ରହେ । ଓଟପକ୍ଷୀ ଅଣ୍ଡା ପାଖକୁ ଆସିଲାକ୍ଷଣି କାଣ୍ଡ ବାଜି ମାରେ । ଆଫ୍ରିକାର ଅସଭ୍ୟଲୋକମାନେ ଓଟପକ୍ଷିର ଡିମ୍ବକୁ ଛିଦ୍ର କରି ଜଳପାତ୍ର କରନ୍ତି । ବିଲାତର ସ୍ତ୍ରୀମାନେ ଓଟପକ୍ଷିର ପର ଟୋପିରେ ଲଗାଇ ପିନ୍ଧନ୍ତି ।

---

## ଇଗଲ ଓ ଡାମରାକାଉ ।

ଏକସ୍ଥାନରେ କେତେଗୁଡ଼ିଏ ମେଣ୍ଢା ଚରୁଥିଲେ । ଗୋଟାଏ ଇଗଲ୍ ଆସି ଗୋଟାଏ ମେଣ୍ଢାକୁ ନଖରେ ଧରି ଉଡ଼ିଗଲା । ତାହା ଦେଖି ଗୋଟାଏ ଡାମରାକାଉ ମନେ’ ଚିନ୍ତା କଲା—“ମୁଁ ମଧ ଏହିପରି ଗୋଟାଏ ମେଣ୍ଢା ଧରି ଯାଇ ଖାଇବି ।” ଏହି ଚିନ୍ତା କରି ଗୋଟାଏ ମେଣ୍ଢା ପିଠିରେ ନଖ ମାରି ଦେଲାକ୍ଷଣି, ଡାମରାକାଉର ନଖ ମେଣ୍ଢା ପିଠିରେ ଲାଖି ରହିଲା । ଡାମରାକାଉ କାକା ହେ କରି ଛଟପଟ ହେବାରୁ, ମେଷପାଳକ ଖଣ୍ଡିଏ ବାଡ଼ି ଧରି ତାହା ପାଖକୁ ଯାଇ କହିଲା — ଇଗଲ ପରି ତୁ ମଧ୍ୟ ଗୋଟାଏ ମେଣ୍ଢାକୁ



ଯୋଗ୍ୟନାହିଁ ବୋଲି ମନେ କରିଥିଲୁ । ମାତ୍ର ଆପଣାର ଶକ୍ତି ନ ବୁଝି କାର୍ଯ୍ୟ କଲେ ଏହିପରି ବଣାହୁଏ । ମେଷପାଳକ ଏହା କହି ବାଡିରେ ଏକ ପାହାର ମାରି ତାକୁ ମାରି ପକାଇଲା ।

---

## ବ୍ୟବହାରିକ ଜ୍ଞାନ ।

### କାଗଜ, ଚିନି, ସାବୁନ ଓ କାଚ ।

ଛିଣ୍ଡାଲୁଗା, ଝୋଟ, ଛଣ, କଦଳୀଗଛ, ବାଉଁଶ, କନାପ, ବେଣା ପ୍ରଭୃତି ନାନା ପ୍ରକାର ଘାସରୁ କାଗଜ ପ୍ରସ୍ତୁତ ହୁଏ । ଉକ୍ତ ପଦାର୍ଥମାନଙ୍କୁ ଢିଙ୍କିରେ କୁଟି, ଜଳ ଦେଇ ମଣ୍ଡ ପରି କରନ୍ତି । ତହିଁ ଉତ୍ତାରୁ ଚାଲୁଣି ପରି ଛିଦ୍ର ଥିବା ଗୋଟିଏ ପାତ୍ରରେ ଢାଳି ଦେଲେ ଜଳ ନିଗିଡ଼ି ପଡ଼େ । ତାହାକୁ ଖରାରେ ଶୁଖାଇ ତାହାର ଚାରିପାଖ କାଟି କାଗଜ ପ୍ରସ୍ତୁତ କରନ୍ତି । ଉକ୍ତ କାଗଜରେ ଭାତ କିମ୍ବା ଅଳୁ ପ୍ରଭୃତିର ମଣ୍ଡ ଲଗାଇ ତାହା ଉପରେ କୌଣସି ଚିକଣ ପଦାର୍ଥ ଘଷି ଚିକ୍କଣ କରନ୍ତି । ବର୍ତ୍ତମାନ ଏହି ସବୁ କାର୍ଯ୍ୟ କଳରେ ହେଉଥିବା ରୁ କାଗଜର ମୂଲ୍ୟ ଅଳ୍ପ ହୋଇଅଛି । ବର୍ତ୍ତମାନ ନାନା ଦେଶରେ କାଗଜର କଳ ହୋଇଅଛି ।

କାଗଜରେ ଲେଖାଯାଏ, ବହି ପ୍ରଭୃତି ଛପା ହୁଏ । କାଗଜଦ୍ୱାରା ଡବା, ବାକ୍ସ, ବହିର ମଲାଟ ପ୍ରଭୃତି ହୁଏ । ଆମେରିକା ଏବଂ ଇଉରୋପ ପ୍ରଭୃତି ଦେଶରେ କାଗଜରେ ଘର, ଗାଡ଼ିଚକ, ନୌକା ପ୍ରଭୃତି ପ୍ରସ୍ତୁତ ହେଉଅଛି ।

ଆଖୁ, ଖଜୁରି କିମ୍ବା ତାଳରସକୁ ରାନ୍ଧି ଗୁଡ଼ ପ୍ରସ୍ତୁତ କରନ୍ତି । ଶୁଖିଲା ଗୁଡ଼କୁ ଟୋକାଇରେ ଦୁଇ ତିନିଦିନ ରଖିଲେ ସେଥିରୁ ଝୋଲାଗୁଡ଼ ବାହାରିଯାଏ । ତାହା ଉପରେ ଚଉଁରିଆଦଳକୁ ଘୋଡ଼ାଇ ଦେଲେ ଚାରି ପାଞ୍ଚ ଦିନମଧ୍ୟରେ ଉପର ଗୁଡ଼ ଚିନି ହୁଏ । ସେହି ଚିନିକୁ କାଢ଼ି ନେଇ ତଳି ଗୁଡ଼ରେ ପୁଣି ଚଉଁରିଆ ଦଳ ଘୋଡ଼ାଇ ଚିନି ପ୍ରସ୍ତୁତ କରନ୍ତି । ଉକ୍ତ ଚିନିକୁ ଜଳରେ ଫୁଟାଇ ଦୁଧପାଣି କିମ୍ବା ଅନ୍ୟ ପଦାର୍ଥ ଦେଇ ପରିଷ୍କାର କରନ୍ତି । ଏ ଦେଶରେ ଯେଉଁ ପରିଷ୍କାର କାଶୀଚିନି ବିକ୍ରୟ ହୁଏ, ତାହା ହାଡ଼ପୋଡ଼ା ଅଙ୍ଗାରରେ ପରିଷ୍କାର ହୁଏ ।

ଚିନିରୁ ମିଶ୍ରି ଓ ନାନା ପ୍ରକାର ମିଷ୍ଟାନ୍ନ ପ୍ରସ୍ତୁତ ହୁଏ ବଙ୍ଗଦେଶରେ ଅନେକ ଖଜୁରି ଗୁଡ଼ ଓ ଖଜୁରି ଚିନି ଏବଂ ମାନ୍ଦ୍ରାଜ ପ୍ରଦେଶରେ ତାଳଗୁଡ଼ ଓ ତାଳଚିନି

ବ୍ୟବହାର ହୁଏ; ମାତ୍ର ଓଡ଼ିଶାରେ ଭାଲ ଚମ୍ପା ଶଙ୍ଖସୀଗୁଡ଼ ହୁଏ ନାହିଁ । ବର୍ତ୍ତମାନ ବିଟପାଲଙ୍ଗ ଏବଂ ଅଲକାତରାରୁ ଚମ୍ପା ପ୍ରସ୍ତୁତ ହେଉଅଛି । ଅଲକାତରା ଚମ୍ପା ଏତେ ମିଷ୍ଟ ଯେରେ ଅଲକାତରା ଚମ୍ପା ସଙ୍ଗେ ୫ ସେର ଅଣ୍ଟେଚନୀ ସହ କୁହେ ।

ତେଲ ସାଜିମାଟି ଓ ଚୂନ ମିଶି ସାବୁନ ପ୍ରସ୍ତୁତ ହୁଏ । କେହି୨ ଚର୍ବି ମିଶାଇ ସାବୁନ ପ୍ରସ୍ତୁତ କରନ୍ତି । ଭଲସାବୁନ ତିମିତେଲ ଜମ୍ପା ନଡ଼ିଆତେଲରେ ପ୍ରସ୍ତୁତ ହୁଏ ।

ବାଲି ଓ ଏକପ୍ରକାର କ୍ଷାରରେ କାଚ ପ୍ରସ୍ତୁତ ହୁଏ । ଏହି ଦୁଇ ପଦାର୍ଥକୁ ନିଆଁରେ ଅଉଟି ଛାଞ୍ଚରେ ଢାଲି ବୋତଲ, ଗିନା, ଗିଲାସ ଆଦି ପ୍ରଭୃତି ପ୍ରସ୍ତୁତ କରନ୍ତି । କଲି-କତାରେ ଭଙ୍ଗାକାଚକୁ ଅଉଟି ଯେଉଁ କାଚପଦାର୍ଥମାନ ପ୍ରସ୍ତୁତ କରନ୍ତି ତାହାକୁ ଗଙ୍ଗାଜଳଆ କାଚ କହନ୍ତି । ଗଙ୍ଗାଜଳିଆ କାଚ ଦେଖିବାକୁ ସୁନ୍ଦର ହୁଏ ନାହିଁ । ବିଲାତରୁ ଅନେକ କାଚପଦାର୍ଥ ଏ ଦେଶକୁ ଆସେ । ବିଲାତର କାଚ ପ୍ରସ୍ତୁତ କରିବାର ବଡ଼୨ କାରଖାନା ଅଛି । ପୂର୍ବକାଳରେ ଯେଉଁ ସମୟରେ ବିଲାତରେ ଲୋକେ ଅତ୍ୟନ୍ତ ଅସଭ୍ୟ ଥିଲେ ସେହି ସମୟରେ ଏ ଦେଶରେ ଲୋକେ କାଚ ପ୍ରସ୍ତୁତ କରି ଜାଣୁଥିଲେ ।

---

## ବୋଆସାପ ।

ଯେତେ ପ୍ରକାର ସାପ ଅଛନ୍ତି ସେମାନଙ୍କ ମଧ୍ୟରେ ବୋଆ ସମସ୍ତଙ୍କଠାରୁ ବଡ଼ । ଆମେରିକା ଆଫ୍ରିକା ଏବଂ ପ୍ରଶାନ୍ତମହାସାଗରର ଦ୍ୱୀପମାନଙ୍କରେ ବୋଆସାପ ଅଛନ୍ତି । ଏମାନେ ଦୀର୍ଘରେ ୨୦।୨୨ ହାତ ହୁଅନ୍ତି । ମହିଷ, ଘୋଡ଼ା, ହରିଣ, ମନୁଷ୍ୟ ପ୍ରଭୃତିକୁ ଏମାନେ ମାରିଖାନ୍ତି । କୌଣସି ପଶୁକୁ ଧରିଲାକ୍ଷଣି ଏମାନେ ତାହା ଦେହରେ ଗୁଡ଼େଇ



ହୋଇ ତହାର ହାଡ଼ସବୁ ଭାଙ୍ଗିପକାନ୍ତି । ଚିତ୍ରରେ ଦେଖ ଗୋଟିଏ ସାପ ଜଣେ ମନୁ-ଷ୍ୟକୁ କେମନ୍ତେ ଗୁଡ଼େଇ ଧରିଅଛି । ଏମାନେ ଯାହାକୁ ଗୁଡ଼େଇ ଧରନ୍ତି ଅଳ୍ପକ୍ଷଣ ମଧ୍ୟରେ ତାହାର ମୃତ୍ୟୁ ହୁଏ । ଏମାନେ ଗୁଡ଼େଇ ହୋଇ ତାହାର ହାଡ଼ସବୁ ଭାଙ୍ଗି ଗୋଟିଏ ମାଂସପିଣ୍ଡ ପରି କରନ୍ତି । ତହିଁ ଉତ୍ତାରୁ ତାହାକୁ ଲାଳି କୋମଳ କରି ଗିଳନ୍ତି । ଥରେ ଆହାର କଲେ ଏମାନେ କେତେକ ଦିନ ସ୍ଥିର

ହୋଇ ଏକସ୍ଥାନରେ ପଡ଼ିଥାନ୍ତି । ଏହି ସମୟରେ ଏମାନଙ୍କୁ ସହଜରେ ମାରି ହୁଏ । ଖାଦ୍ୟ ଜୀର୍ଣ୍ଣ ହୋଇଗଲେ ଏମାନେ ଆଶ୍ରୟସ୍ଥାନରୁ ବାହାରି ଶିକାର ଅନ୍ୱେଷଣ କରନ୍ତି । ଦକ୍ଷିଣଆମେରିକାରେ ଏକଜାତିର ବଡ଼ ସାପ ଅଛନ୍ତି ସେମାନଙ୍କୁ ପାଣିବୋଅ କହନ୍ତି । ଏମାନେ ୪୦ ହାତ ପର୍ଯ୍ୟନ୍ତ ଦୀର୍ଘ ହୁଅନ୍ତି । ପାଣିବୋଅ ଅଧିକାଂଶ ସମୟ ଜଳରେ ବାସକରେ । ଏମାନେ ନଦୀକୂଳରେ ସ୍ଥିର ହୋଇ ପଡି ଥାନ୍ତି । ଜଳରେ କିମ୍ୱା ସ୍ଥଳରେ କୌଣସି ପ୍ରାଣିକୁ ଦେଖିଲାକ୍ଷଣି ତାହାକୁ ଧରି ଖାନ୍ତି । କୌଣସି ପ୍ରାଣିକୁ ଆକ୍ରମଣ କରି ପୂର୍ବେ ପାଣିବୋଅ ଆପଣା ଲଞ୍ଜକୁ ଖଣ୍ଡିଏ ପଥର କିମ୍ୱା କୌଣସି ବୃକ୍ଷ ଦେହରେ ଗୁଡ଼େଇ ରହି ଶିକାର ଉପରକୁ ହଠାତ୍ ଡେଇଁ ପଡି ତାହାକୁ ଗୁଡ଼େଇ ପକାଏ । ଏହି ସାପ ଶିକାର ଦେହରେ ଗୁଡ଼େଇ ହୋଇ ଏପରି ବଳରେ ଭିଡ଼ି ଧରେ ଯେ ତାହାର ହାଡ଼ଯାକ ସବୁ ଚୂର୍ଣ୍ଣ ହୋଇଯାଏ । ଏମାନେ ଏହିପରି ହରିଣ, ମହିଷ, ଗୋରୁ ପ୍ରଭୃତିକୁ ଧରି ଖାନ୍ତି । ଥରେ ଏକ ସାହେବ ଘୋଡ଼ାରେ ଚଢ଼ି ଘୋଡ଼ାରେ ଦଉଡ଼ାଇ ଯାଉଥିବା ସମୟରେ ଗୋଟାଏ ପାଣିବୋଅ ଦୁହିଁଙ୍କ ଦେହରେ ଏକାବେଳେକେ ଗୁଡ଼େଇ ହୋଇ ଦୁହିଁଙ୍କୁ ମାରି ଗିଳି ଦେଲା ।

ଏ ଦେଶରେ ବାଘଚିତି ଏହି ଜାତୀୟ ସାପ ଅଟନ୍ତି । ବାଘଚିତିମାନେ ବୋଅ ପରି ବଡ଼ ହୁଅନ୍ତି ନାହିଁ । ବାଘଚିତିମାନେ ହରିଣ, ବାଛୁରି, ଛେଳି, ମେଣ୍ଢା ପ୍ରଭୃତି ଧରି ଗିଳନ୍ତି । ବୋଅ ଓ ବାଘଚିତି ସାପର ବିଷ ନାହିଁ ।

---

## ଶୃଗାଳ ଓ ସାରସ

ଏକ ଶୃଗାଳ ସଙ୍ଗେ ଏକ ସାରସର ବନ୍ଧୁତା ହେଲା । ଦିନେ ଶୃଗାଳ ସାରସକୁ କହିଲା—"ଭାଇ, କାଲି ମୋ ଘରଠାରେ ତୁମ୍ଭର ନିମନ୍ତ୍ରଣ ରହିଲା; ମୁଁ ତୁମ୍ଭ ସକାଶେ ବିବିଧ ଭୋଜନ ପଦାର୍ଥ ପ୍ରସ୍ତୁତ କରି ରଖିଥିବି, ତୁମ୍ଭେ କାଲି ଦିନ ଦୁଇ ପ୍ରହର ବେଳେ ମୋ ଘରକୁ ଯିବ ।"

ସାରସ ଶୃଗାଳ କଥାରେ ସମ୍ମତ ହୋଇ ତହିଁ ପରଦିବସ ଦୁଇପ୍ରହର ବେଳେ ଶୃଗାଳ ଘରଠାରେ ଉପସ୍ଥିତ ହେଲା । ତହୁଁ ଉତ୍ତାରୁ ଶୃଗାଳ ଖଣ୍ଡିଏ ଚଟକା ଥାଳରେ ମାଂସର ଅଣ ରଖି ସାରସକୁ କହିଲା,—"ଭାଇ ଭୋଜନ କରିବ ଆସ ।"

ଦୁଇ ବନ୍ଧୁ ଥାଳର ଦୁଇ ପାଖରେ ଭୋଜନ କରିବାକୁ ବସିଲେ । ଲମ୍ବଥଣ୍ଟ ହେତୁ ସାରସ ଥାଳରେ ଥିବା ଅନ୍ନ କିଛି ଖାଇ ପାରିଲା ନାହିଁ; ମାତ୍ର ଶୃଗାଳ ଚାଟି୨ ସବୁ ଝୋଳ ପିଇଦେଲା । ତହିଁଉତ୍ତାରୁ ଶୃଗାଳ ହସି୨ ସାରସକୁ ପଚାରିଲା —"ଭାଇ କେମନ୍ତେ ଭୋଜନ କଲ ? ସାରସ ଅତ୍ୟନ୍ତ କ୍ଷୁଧିତ ହୋଇଥିଲା, ଶୃଗାଳର ପରିହାସରେ କୌଣସି ଉତ୍ତର ନ ଦେଇ, ମନେ୨ ଚିନ୍ତା କଲା—"ଏହି ଧୂର୍ତ୍ତ ଭୋଜନ କରିବାକୁ ଡାକି ମୋତେ ବଞ୍ଚନା କଲା, ଏହାକୁ କାଲି ଶିକ୍ଷା ଦେବି ।" ଏହା ଚିନ୍ତା କରି ସାରସ କହିଲା—"ଭାଇ କାଲି ତୁମ୍ଭେ ମୋ ଘରଠାରେ ଭୋଜନ କରିବ ।" ଶୃଗାଳ ସମ୍ମତ ହେଲାରୁ ସାରସ ଆପଣା ଘରକୁ ଚାଲିଗଲା ।



ତହିଁ ପରଦିବସ ଶୃଗାଳ ସାରସ ଘରଠାରେ ଉପସ୍ଥିତ ହେଲା । ସାରସ ଗୋଟାଏ ସୋରାଇରେ ମାଂସ ଓ ଅନ୍ନ ରଖି ଶୃଗାଳକୁ ଭୋଜନ କରିବାକୁ ଡାକିଲା । ସାରସ ଆପଣାର ଲମ୍ବଥଣ୍ଟକୁ ସୋରାଇ ମଧ୍ୟରେ ପୂରାଇ ଭୋଜନ କଲା । ମାତ୍ର ସୋରାଇ ଭିତରକୁ ଶୃଗାଳର ମୁହଁ ନ ଗଳିବାରୁ ସେ କିଞ୍ଚିନ୍ମାତ୍ର ଭୋଜନ କରି ପାରିଲା ନାହିଁ । ସାରସ ଖାଉଁ୨ ଶୃଗାଳକୁ କହିଲା—"ଭାଇ କାଲି ତୁମ୍ଭ ଘରଠାରେ ମୁଁ ଦିବ୍ୟ ଭୋଜନ କରି ଆସିଥିଲି; ତୁମ୍ଭେ ମୋ ଘରେ ଉତ୍ତମ ଭୋଜନ କରି ଯାଅ ।"

ଶୃଗାଳ କିଛି ଖାଇ ନ ପାରି ଆପଣା ଘରକୁ ଯାଉଁ୨ ବାଟରେ କହିଲା—"ମୁଁ ଯେପରି ବଞ୍ଚନା କରିଥିଲି, ମୋତେ ତାହାର ଉପଯୁକ୍ତ ଫଳ ମିଳିଲା ।"

## ଉଡ୍ଡୀୟମାନ ମତ୍ସ୍ୟ ।

ସମୁଦ୍ରରେ ଏକପ୍ରକାର ମାଛ ଅଛନ୍ତି ସେମାନେ ଆକାଶରେ ଉଡ଼ି ପାରନ୍ତି, ଏଣୁ



ସେମାନଙ୍କୁ ଉଡ୍ଡୀୟମାନ ମତ୍ସ୍ୟ କହନ୍ତି । ସେମାନେ ଜଳପହଁରୁଥିବା ବେଳେ କୌଣସି ଶତ୍ରୁ ଉପସ୍ଥିତ ହେଲେ,ସେହିକ୍ଷଣି ଜଳରୁ ଉଠି ଛଅ ସାତ ଶତ ହାତ ଉଡ଼ିଯାଇ ପୁଣି ଜଳରେ ପଡ଼ନ୍ତି । ସେମାନଙ୍କ ଡେଣା ପବନ ବାଜି ଶୁଖି ଗଲେ ଆଉ ଉଡି ପାରନ୍ତି ନାହିଁ, ସେହିକ୍ଷଣି ଜଳକୁ ଖସି ପଡ଼ନ୍ତି ଏବଂ ଜଳରୁ ଉଠି ପୁଣି ଉଡ଼ନ୍ତି । ଜଳ ଛଡ଼ା ୧୫ ହାତରୁ ଅଧିକ ଉଚରେ ସେମାନଙ୍କୁ ଉଡ଼ିବାର ଦେଖା ଯାଏ ନାହିଁ । ଆକାଶରେ ଉଡ଼ିବାବେଳେ ପକ୍ଷିମାନେ ସେମାନଙ୍କୁ ଧରିବାର ଚେଷ୍ଟା କଲେ ସେମାନେ ସେହିକ୍ଷଣି ଜଳକୁ ଖସି ପଡ଼ନ୍ତି ।

ଆଉ ଏକଜାତିର ଉଡ୍ଡୀୟମାନ ମତ୍ସ୍ୟ ଅଛନ୍ତି, ଏହା ଦେଖିବାକୁ ବଡ଼ ସୁନ୍ଦର । ଏହି ଜାତିର ମାଛ ବଡ଼ ହୁଅନ୍ତି ନାହିଁ କିମ୍ବା ଅଧିକ ଦୂରକୁ ଉଡି ପାରନ୍ତି ନାହିଁ । ଜାପାନଦ୍ୱୀପର ନଦୀମାନଙ୍କରେ ଏହି ମାଛ ଅଛନ୍ତି । ଜାପାନିମାନେ ଏହି ମାଛ ଖାଇବାକୁ ଅତ୍ୟନ୍ତ ସୁଖ ପାନ୍ତି ।

---

## ଦୁର୍ଜ୍ଜନ ସଙ୍ଗ ।

ଦୁର୍ଜ୍ଜନହୃଦରେ ଦୟା ନ ଥାଏ, ସନ୍ତ ଦଂଶଇ ତାକୁ ଙ୍ଗାଠ ପ୍ରାୟ ।
ସାଧୁଲୋକମାନେ କହନ୍ତି ଯାହା, କେବେହେଁ ତାକୁ ନ ରୁଚଇ ତାହା ।
ଯାର ଭଲ ମନ୍ଦ ବିଗ୍ୟର ନାହିଁ, ସନ୍ତୁବଚନ ସେ ଘେନିବ କାହିଁ ?
ଦୁଧଭାଣ୍ଡେ ନେଇଅଙ୍ଗାର ଧୁଅ, ସହସ୍ରବେଳ ପରିଯତ୍ନେ ଧୂଅ ।
କେବେହେଁ କଳା ନ ଛାଡ଼ଇ ତାର, ଦୁର୍ଜ୍ଜନସ୍ୱଭାବ ସେହି ପ୍ରକାର ।
ତାହା ସଙ୍ଗରେ ନୋହିବ ମେଳ, ହେଲେ ନିଶ୍ଚେ ଫଳିବ ମନ୍ଦଫଳ ।

ଏ କଥାରେ କେବେଁ ହେଳା ନ କର, ଶୁଣ କହିବା ଦୃଷ୍ଟାନ୍ତ ତହିଁର ।
ପଥିକ ଜଣେ ପଥଶ୍ରାନ୍ତ ହୋଇ, ବଟବୃକ୍ଷମୂଳେ ମିଳିଲା ଯାଇ ।
ନିଦ୍ରାଳସେ ସେ ଉତ୍ତାନେ ଶୋଇଲା, ପତ୍ରରନ୍ଧ୍ରେ ଖରା ମୁଖେ ପଡ଼ିଲା ।
ବୃକ୍ଷ ପରେ ଯେ ଥିଲା ହଂସବର, ଦୟା କରି କଲା ପକ୍ଷ ବିସ୍ତାର ।
ମୁଖ ଖରା ତା ଅନ୍ତର ହୋଇଲା, ପଥିକ ମୁଖ ମେଲିକରି ଶୋଇଲା ।
ଦୁଷ୍ଟ କାକେ ଥିଲା ଦେଖି ସୁଯୋଗ, ପଥିକ ମୁଖେ କରି ମଳତ୍ୟାଗ ।
ପଳାଇ ଗଲା ହଂସ ନ ଜାଣଇ, ଉଠି ପଥିକ ମହାକ୍ରୋଧ ହୋଇ;—
ଦେଖିଲା ହଂସ ପକ୍ଷକୁ ବିସ୍ତାରି ଡାଳେ ବସିଛି, ତା କାର୍ଯ୍ୟ ବିଚାରି,
ତୀକ୍ଷ୍ଣ ଶର ସେଠିଁ ନିକ୍ଷେପିଲା, ନିର୍ଦ୍ଦୋଷୀ ହଂସ କାକଦୋଷେ ମଲା
ଏଣୁ ହେବ ଦୁଷ୍ଟଲୋକଙ୍କ ସଙ୍ଗ, ସକଳ ସମୟେ କରିବ ତ୍ୟାଗ ।

---

### ବିରାଡ଼ି ଓ ପାତିମାଙ୍କଡ଼ ।

ଖଣ୍ଡିଏ ପିଠା ସକାଶେ ଯୋଡ଼ିଏ ବିଲୁଆର ବିବାଦ ଉପସ୍ଥିତ ହେବାରୁ, ବିବାଦ ମୀମାଂସା କରିବା ସକାଶେ ସେମାନେ ଏକ ପାତିମାଙ୍କଡ଼କୁ ମଧ୍ୟସ୍ଥ ମାନିଲେ । ପାତି-ମାଙ୍କଡ଼ ଗୋଟାଏ ନିକ୍ତି ଆଣି ଉକ୍ତ ପିଠାକୁ ଦୁଇଖଣ୍ଡ କରି ଓଜନ କଲା । ଗୋଟାଏ ପାଖର ପିଠା ଅଳ୍ପ ଭାରି ହେବାରୁ ତାହାକୁ ଅନ୍ୟ ପାଖ ପିଠା ସଙ୍ଗେ ସମାନ କରିବା ସକାଶେ ଭାରି ହୋଇଥିବା ଖଣ୍ଡରୁ ଅପେ ଫୁଲାଏ କାମୁଡ଼ି ଖାଇ ଦେଲା । ତାହା ଉତ୍ତାରୁ ନିକ୍ତିରେ ପକାଇ ଓଜନ କଲାରୁ ଅନ୍ୟ ପାଖ ପିଠା ଖଣ୍ଡିକ ଅଧିକ ଭାରି ହେଲା । ପୂର୍ବ-ପରି ଭାରି ହୋଇଥିବା ପିଠା ଖଣ୍ଡରୁ ଫୁଲାଏ ଖାଇଦେଇ ପୁଣି ଓଜନ କଲା । ଏହିପରି ପ୍ରତିଥର ଓଜନ କରିବା ପୂର୍ବେ ଗୋଟାଏ ପାଖରୁ ଫୁଲାଏ ଖାଇ ଦୁଇପାଖର ପିଠା ଦୁଇଖଣ୍ଡଯାକ ଖାଇ ଦେଲା । ବିରାଡ଼ିମାନେ ଏହିପରି ବିବାଦମୀମାଂସାରେ ଦୁଃଖିତ ହୋଇ ଲେଉଟି



ଆସିଲେ । ଅସିବା ସମୟରେ ଗୋଟିଏ ବଗଡ଼ ଅପରକୁ କହିଲା—"ଦେଖ ଭାଇ, ବିବାଦ କଲେ ଏହିପରି ଫଳ ଲାଭ ହୁଏ । ଲୋକେ ଯେଉଁ ସମ୍ପତ୍ତି ପାଇବା ସକାଶେ ବିବାଦ କରନ୍ତି, ମୋକଦ୍ଦମା ତୁଲ୍ଲାଇବାରେ ବ୍ୟୟ କରି ପଛକୁ ତାହା ହରାଇ ବସନ୍ତି । ପଛମାକଡ଼ ପ୍ରତିଥର ଓଜନ କରିବା ସମୟରେ ଯେପରି ମୁଲାଏ ମୁଲାଏ ଖାଇ ସମସ୍ତ ପିଠା ଖାଇଦେଲା, ପ୍ରତି ମୋକଦ୍ଦମାରେ ସମ୍ପତ୍ତିର ଅଳ୍ପ ଅଳ୍ପ ନଷ୍ଟ ହୋଇ ସେହିପରି ସମସ୍ତ ସମ୍ପତ୍ତି ନଷ୍ଟ ହୋଇଯାଏ ।"

---

## ବ୍ୟବହାରିକ ଜ୍ଞାନ ।

### ହୀରା, ମୁକ୍ତା, ପୋହଳା ।

ହୀରା ଖଣିରୁ ବାହାରେ । ବ୍ରହ୍ମଦେଶ, ହାଇଦ୍ରାବାଦ, ଆଫ୍ରିକା ଓ ଆମେରିକାରେ ହୀରାର ଖଣି ଅଛି । ଧନଲୋକ ଗହଣାରେ ହୀରା ବସାଇ ପିନ୍ଧନ୍ତି । ପୃଥିବୀରେ ଯେତେ ପଦାର୍ଥ ଅଛି ସବୁଠାରୁ ହୀରାର ମୂଲ୍ୟ ଅଧିକ ଅଟେ । ଖଣ୍ଡିଏ ଖଣ୍ଡିଏ ହୀରାର ମୂଲ୍ୟ ତିନି ଚାରି କୋଟି ଟଙ୍କା ।

ସମୁଦ୍ରର ଏକପ୍ରକାର ଶାମୁକାରୁ ମୁକ୍ତା ଜାତ ହୁଏ । ସମୁଦ୍ରର ଯେଉଁ ସ୍ଥାନରେ ଏହି ଜାତିର ଶାମୁକା ଜନ୍ମ ହୁଏ, ସେଠାରେ ନୋଳିଆମାନେ ପାଣି ଭିତରେ ବୁଡ଼ି ସେମାନଙ୍କୁ ଘେନି ଆସି ସେଥିରୁ ମୁକ୍ତା ବାହାର କରନ୍ତି । ହୀରା ପରି ମୁକ୍ତା ଅନେକ ଗହଣାରେ ଲାଗେ ।

ଏ ଦେଶରେ ଏବଂ ଗଡ଼ଜାତରେ ଅନେକେ ପୋହଳା ପିନ୍ଧନ୍ତି । ଏକଜାତିର କ୍ଷୁଦ୍ର କୀଟ ଅଛନ୍ତି ସେମାନଙ୍କୁ ପ୍ରବାଳକୀଟ କହନ୍ତି । ଏହି କୀଟମାନେ ସମୁଦ୍ରଜଳରେ ପୋହଳା ପ୍ରସ୍ତୁତ କରନ୍ତି । କୌଣସି ଗଛରେ ପତ୍ର ନ ଥିଲେ ଯେମନ୍ତ ଦିଶେ ପୋହଳା ଦେଖିବାକୁ ସେହିପରି ଅଟେ । ଲୋକେ ତାହାକୁ ପରିଷ୍କାର ଓ ଖଣ୍ଡ ଖଣ୍ଡ କରି କାଟି ବ୍ୟବହାର କରନ୍ତି । ପାର୍ଶ୍ୱରେ ପୋହଳାର ଚିତ୍ର ଦିଆ ହୋଇଅଛି । ସମୁଦ୍ର ମଧ୍ୟରେ ପ୍ରବାଳକୀଟମାନଙ୍କ ଦ୍ୱାରା ଗୋଟିଏ ଗୋଟିଏ ଦ୍ୱୀପ ପ୍ରସ୍ତୁତ ହୋଇଅଛି ।



କୌଣସି କୌଣସି ପ୍ରବାଳଦ୍ୱୀପ କଟକଜିଲ୍ଲାଠାରୁ ବଡ଼ ଅଟେ ।

## କଚ୍ଛପ ଓ ଠେକୁଆ ।

ଖଣ୍ଡଗିରି ପର୍ବତରେ ଏକ କଚ୍ଛପ ଓ ଠେକୁଆ ଥିଲେ । ଦିନେ ଏକ ସ୍ଥାନ ଘେନି ସେମାନଙ୍କ ମଧ୍ୟରେ ବିବାଦ ହେବାରୁ, ସେମାନେ ଏକ ବିଲୁଆ ଏବଂ ଏକ ଗୁଣ୍ଡୁଚି-ମୂଷାକୁ ମଧ୍ୟସ୍ଥ ମାନିଲେ । ସେମାନଙ୍କ ବିବାଦ କଥା ଶୁଣି ଗୁଣ୍ଡୁଚିମୂଷା ଏବଂ ବିଲୁଆ ସେମାନଙ୍କୁ କହିଲେ—'ଆମ୍ଭେମାନେ ଏହିଠାରେ ବସିଅଛୁଁ ତୁମ୍ଭ ଦୁଇ ଜଣଙ୍କ ମଧ୍ୟରୁ ଯେ ଏହି ଖଣ୍ଡଗିରି ପାହାଡ଼ ଚୂଡ଼ାପାଖରେ ବୁଲି ଏହି ସ୍ଥାନକୁ ଫେରି ଆସିବ, ଏହି ସ୍ଥାନ ତାହାର ହେବ । ତାହା ଶୁଣି ଦୁହେଁଯାକ ବାହାରିଲେ । ଠେକୁଆ ମୁହୂର୍ତ୍ତ ମଧ୍ୟରେ ଅଦୃଶ୍ୟ ହେଲା । ମାତ୍ର କଚ୍ଛପ ଧୀରେ ଧୀରେ ଗଲା । ଠେକୁଆ କେତେକ ଦୂର ଯାଇ ମନେ ମନେ ଚିନ୍ତା କଲା, "ମୁଁ ଦଣ୍ଡକେ ପାହାଡ଼ ଚୂଡ଼ାପାଖରେ ବୁଲି ଆସିବି, ମାତ୍ର କଚ୍ଛପର ଯିବାକୁ ବହୁତ ବିଳମ୍ବ ହେବ । ମୁଁ ଏହିଠାରେ ଦଣ୍ଡେ ଶୋଇ ଗଲେ ସୁଦ୍ଧା କଚ୍ଛପ ନ ପହୁଞ୍ଚୁଣୁ ଯାଇ ପହୁଞ୍ଚିବି ।" ଏହା ଚିନ୍ତା କରି ସେହିଠାରେ ଶୋଇ ରହିଲା । ଏହା-ଉତ୍ତାରୁ କଚ୍ଛପକୁ ସେହିବାଟ ଦେଇ ଯିବାର ଦେଖି ଠେକୁଆ କହିଲା—"ହଉ ଯାଅ ମୁଁ ପଛୁ ବାହାରି ତୁମ୍ଭେ ନ ପହୁଞ୍ଚୁଣୁ ଆଗେ ଯାଇ ପହୁଞ୍ଚିବି ।" ଏହା କହି ଠେକୁଆ ନିଶ୍ଚିନ୍ତ ହୋଇ ଶୋଇ ରହିଲା । କଚ୍ଛପ ବାଟରେ ଆଳସ୍ୟ ନ କରି ଧୀରେ ଧୀରେ ଗଲା । ଠେକୁଆ ଶୋଇ ଉଠି, ବେଗରେ ଦଉଡ଼ି ଯାଇ ଦେଖିଲା, କଚ୍ଛପ ଆଗେ ପହୁଞ୍ଚି ଅଛି । ତହୁଁ ମଧ୍ୟସ୍ଥମାନେ ଠେକୁଆକୁ କହିଲେ—"ତୁମ୍ଭେ କଚ୍ଛପଠାରୁ ଅତ୍ୟନ୍ତ ବେଗରେ ଯାଇ ପାର, ମାତ୍ର ଆଳସ୍ୟ ହେତୁ ହାରି ଗଲ ।" ଯେଉଁମାନେ କାର୍ଯ୍ୟ ଆଗେ ନ ସାରି ପଛକୁ ରଖି ଦିଅନ୍ତି ସେମାନଙ୍କର ଏହିପରି ଦଶା ହୁଏ ।



---

## ମଗର ।

ମଗର ଅତ୍ୟନ୍ତ ଭୟାନକ ଜନ୍ତୁ । ପ୍ରାୟ ସବୁ ସମୁଦ୍ରରେ ମଗର ଅଛନ୍ତି । ଯେତେ

ପ୍ରକାର ମଗର ଅଛନ୍ତି ସେମାନଙ୍କ ମଧ୍ୟରେ ଶ୍ୱେତମଗର ସମସ୍ତଙ୍କଠାରୁ ବଡ଼ ହୁଅନ୍ତି । ଗୋଟାଏ ଶ୍ୱେତମଗରର ଓଜନ ୫୦ ମହଣ ପର୍ଯ୍ୟନ୍ତ ହୁଏ । ଶ୍ୱେତମଗର ମାଛ ଖାଇ ବଞ୍ଚେ । ଏମାନେ ଥରେ ମନୁଷ୍ୟ ମାଂସର ସ୍ୱାଦ ପାଇଲେ ମନୁଷ୍ୟ ଖାଇବା ସକାଶେ ସବୁବେଳେ ଜାହାଜ ପଛେ ୨ ଗୋଡ଼ାଉଥାନ୍ତି । ଏଣୁ କେହି ୨ ଏମାନଙ୍କୁ ଜଳବ୍ୟାଘ୍ର ବୋଲି କହନ୍ତି । ଏମାନଙ୍କ ମୁଖ ଏତେ ବଡ଼ ଯେ ଗୋଟିଏ ମନୁଷ୍ୟକୁ ଅନାୟାସେ ଗିଳି ଦେଇ ପାରନ୍ତି । ଥରେ ଗୋଟିଏ ମଗର ପେଟ ମଧ୍ୟରୁ ଗୋଟିଏ ସମ୍ପୂର୍ଣ୍ଣ ମନୁଷ୍ୟ-ଶବ ବାହାରିଥିଲା ।

ଏମାନଙ୍କ ମୁଖରେ ଛଅଧାଡ଼ି ତୀକ୍ଷ୍ଣଦନ୍ତ ଅଛି । ଏହି ଛଅଧାଡ଼ିରେ ୧୪୪ ଗୋଟି ଦନ୍ତ ଥାଏ । ଏମାନେ ଇଚ୍ଛାନୁସାରେ ଦନ୍ତପାଟିକୁ ଠେକି ପାରନ୍ତି କିମ୍ବା ତଳକୁ ପକାନ୍ତି । ଶ୍ୱେତମଗର ମୁହୂର୍ତ୍ତକ ମଧ୍ୟରେ ମନୁଷ୍ୟକୁ ଦୁଖଣ୍ଡ କରିଦିଏ ।

ବିଲାତରୁ ଖଣ୍ଡିଏ ଜାହାଜ ସମୁଦ୍ରରେ ଯାଉଁ ୨ ଗୋଟିଏ ପିଲା ଜାହାଜରୁ ସମୁଦ୍ରରେ ଖସି ପଡ଼ିଲା । ସେହି ପିଲାକୁ ଉଠାଇବା ସକାଶେ ଜଣେ ସାହେବ ଜଳକୁ ଡେଇଁ



ପଡ଼ିଲେ । ଉକ୍ତ ସାହେବ ପିଲାକୁ ଧରି ଜାହାଜ ଉପରକୁ ଉଠିବା ସମୟରେ ଗୋଟିଏ ମଗର ସାହେବଙ୍କୁ ଖାଇବା ସକାଶେ ଭାସି ଉଠିଲା । ଉକ୍ତ ସାହେବଙ୍କ ପୁଅ ବେକନର ତାହା ଦେଖି ଖଣ୍ଡା ଧରି ଜାହାଜରୁ ସାହେବଙ୍କ ପାଖକୁ ଡେଇଁ ପଡ଼ିଲା । ମଗର ପାଖକୁ ଆସିଲାକ୍ଷଣି ବେକନର ଆପଣାର ମୁଠା ପର୍ଯ୍ୟନ୍ତ ଖଣ୍ଡାକୁ ତାହା ଦେହରେ ଭୁଷି ଦେବାରୁ ମଗର ବୁଡ଼ିଗଲା । ଏହି ସମୟରେ ଜାହାଜର ଲୋକେ ଦଉଡ଼ି [illegible]

ସାହେବଙ୍କୁ ଜାହାଜ ଉପରକୁ ଉଠାଇ ନେଲେ । ତାହା ଉତ୍ତାରୁ ବେକନରକୁ ଉଠାଇ ନେବା ସକାଶେ ଦଉଡ଼ ପକାଇ ଦେଲେ । ବେକନର ଦଉଡ଼ ଧରି ଜଳ ଉପରୁ ଅଳ୍ପଦୂର ନ ଉଠୁଣୁ ମଗର ପୁଣି ଭାସିଉଠିଲା ଏବଂ ବେକନରର ଅଣ୍ଟା ପର୍ଯ୍ୟନ୍ତ ଗିଳି ଯାଇ, ଅଣ୍ଟା ପାଖରୁ କାଟିନେଇ ବୁଡ଼ିଗଲା । ଜାହାଜର ଲୋକେ କେହି କିଛି କରି ପାରିଲେ ନାହିଁ ବେକନରଙ୍କ ସକାଶେ ସାହେବଙ୍କ ପ୍ରାଣରକ୍ଷା ହୋଇଥିଲା, ମାତ୍ର ସାହେବ ପ୍ରତିଦର ପ୍ରାଣରକ୍ଷା କରିପାରିଲେ ନାହିଁ । ପୂର୍ବପୃଷ୍ଠାରେ ମଗର ବେକନରର ଅଣ୍ଟା ପର୍ଯ୍ୟନ୍ତ ଗିଳିଥିବାର ଚିତ୍ର ଦିଆ ଯାଇଅଛି ।

---

## ଯାନ ।

ପାଲିକି, ଗାଡ଼ି, ନୌକା ପ୍ରଭୃତିକୁ ଯାନ କହନ୍ତି, ଅର୍ଥାତ୍ ମନୁଷ୍ୟମାନେ ଯାହା ଉପରେ ଚଢ଼ି ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଯାନ୍ତି ତାହାକୁ ଯାନ କହନ୍ତି । ହାତୀ, ଘୋଡ଼ା, ଗଧ, ବଳଦ, ଓଟ, ବଲ୍‌ଗାହରଣ, ଓଟପକ୍ଷୀ ଉପରେ ମନୁଷ ମାନେ ଚଢ଼ନ୍ତି । ଏଦେଶ ଏବଂ ଚୀନ ପ୍ରଭୃତି ଦେଶରେ ପାଲିକିର ବ୍ୟବହାର ଅଛି । ସାହେବମାନଙ୍କ ଦେଶରେ ପାଲିକି ନାହିଁ । ସବୁ ଦେଶର ପାଲିକି ଏକପ୍ରକାର ହୁଏ ନାହିଁ ।



ସାହେବମାନଙ୍କ ଦେଶରେ ଅନେକ ଘୋଡ଼ାଗାଡ଼ି ଅଛି । ଘୋଡ଼ାଗାଡ଼ି ନାନା ପ୍ରକାର ହୁଏ । କୌଣସି ଗାଡ଼ି ଏକ ଘୋଡ଼ାରେ, କୌଣସି ଗାଡ଼ି ଦୁଇ ଘୋଡ଼ାରେ, କୌଣସିଗାଡ଼ି ଚାରିଘୋଡ଼ାରେ କିମ୍ବା ଅଧିକ ଘୋଡ଼ାରେ ଟଣା ହୁଏ । ଭଲ ଘୋଡ଼ାଗାଡ଼ିର ମୂଲ୍ୟ ଦଶ ବାର ହଜାର ଟଙ୍କାରୁ ଅଧିକ ଅଟେ ।

ଏ ଦେଶରେ ବଳଦଶଗଡ଼ ଯେତେ ଅଛି ଅନ୍ୟ କୌଣସି ଯାନ ସେତେ ନାହିଁ । କେତେ ସ୍ଥାନରେ ଶଗଡ଼ ଗୋଟିଏ ବଳଦରେ ଟଣା ହୁଏ । ସବୁ ଯାନମଧ୍ୟରେ ଶଗଡ଼ ସବୁଠାରୁ ବିଳମ୍ବରେ ଚାଲେ । ଏ ଦେଶରେ ମହିଷଗାଡ଼ି ଅଛି, ମାତ୍ର ତାହାର ସଂଖ୍ୟା ଅଧିକ ନୁହେଁ । ରାଜପୁତାନା ପ୍ରଭୃତି ଦେଶରେ ଓଟଗାଡ଼ି ଅଛି ।

ପୂର୍ବେ ଏ ଦେଶରେ ଅଶ୍ୱରଥ, ହସ୍ତୀରଥ ବ୍ୟବହୃତ ହେଉଥିଲା । ପୁରୀ ଜଗନ୍ନାଥ ରଥ ଯେଡ଼େ ବଡ଼ ହୁଏ ସେହି ରଥମାନ ସେଡ଼େ ବଡ଼ ହେଉ ନ ଥିଲା । ବର୍ତ୍ତମାନ ଯେପରି ଘୋଡ଼ାଗାଡ଼ି ହୁଏ, ତାହାଠାରୁ ଅଳ୍ପ ଅଧିକ ଉଚ୍ଚ ହେଉଥିଲା । ପାର୍ଶ୍ୱରେ ପଶ୍ଚିମ ପ୍ରଦେଶର ଏକା ଗାଡ଼ିର ଛବି ଦିଆ ହୋଇଅଛି । ପୂର୍ବକାଳରେ ଯୁଦ୍ଧର ରଥମାନ ବୋଧ ହୁଏ ଏକ୍କା ଗାଡ଼ିପରି କିମ୍ବା ତାହାରୁ ବୃହତ୍ତର ହେଉଥିଲା ।



ରୁଷିଆ ଦେଶର ଉତ୍ତରଭାଗରେ ବରଫ ଉପରେ ବଲ୍‌ଗାହରଣ ଏକ ପ୍ରକାର ଗାଡ଼ି ଟାଣନ୍ତି । କୌଣସି୨ ସ୍ଥାନରେ ସେହିପ୍ରକାର ଗାଡ଼ି କୁକୁରମାନେ ଟାଣନ୍ତି । ଖଣ୍ଡିଏ୨ ଗାଡ଼ିରେ ୨୦।୩୦ ଗୋଟି କୁକୁର ବନ୍ଧା ହୋଇଥାନ୍ତି । ଏହିପରି ଗାଡ଼ିର ଚକ ନ ଥାଏ ।

ଏକପ୍ରକାର ଗାଡ଼ି ଅଛି, ତାହା ଉପରେ ମନୁଷ୍ୟ ବସି ପଦ ଅବା ହାତ ଘୂରାଇ ଚଳାନ୍ତି । ଏହା ଘୋଡ଼ାଗାଡ଼ିଠାରୁ ବେଗରେ ଚାଲେ । ଏପରି ଖଣ୍ଡିଏ ଗାଡ଼ି ଥିଲେ ଘୋଡ଼ା ବଳଦ ପ୍ରଭୃତି ରଖିବାର ଆବଶ୍ୟକ ନାହିଁ । ମାତ୍ର ଏପରି ଗାଡ଼ି ଭଲ ସଡ଼କବାଟ ନ ହେଲେ ଚାଲେ ନାହିଁ ।



ରେଲଗାଡ଼ି ।

ସ୍ଥଳରେ ଯେତେ ପ୍ରକାର ଯାନ ଚାଲେ ତାହା ମଧ୍ୟରେ ରେଲଗାଡ଼ି ସବୁଠାରୁ ବେଗରେ ଯାଏ । ରେଲ ଘଣ୍ଟାକେ ୫୦ କୋଶ ଯାଇ ପାରେ । [illegible] ବାଷ୍ପ [illegible] ଚାଲେ । ସଡ଼କ ଉପରେ ଦୁଇ ଧାଡ଼ି ଲୁହାର ମୋଟା [illegible] କହନ୍ତି । ଗାଡ଼ିର ଚକ ଏହି ପଟି ଉପରେ ଚାଲି [illegible] ରେ[illegible] ।

ଯେଉଁ ଯାନ ଜଳରେ ଚାଲେ ତାହାକୁ ଜଳଯାନ କହନ୍ତି । କାଠଆ ନୌକା, ସୁଲୁପ, ଷ୍ଟିମାର ଅବା ଅଗ୍ନିବୋଟ ପ୍ରଭୃତି ଜଳଯାନ ଅଟେ । କାଠୁଆ, ନୌକା ପ୍ରଭୃତି କାତ ଏବଂ ଆଉଲାରେ ଚାଲେ । ନୌକା, ସୁଲୁପ, ପ୍ରଭୃତି ପବନବଳରେ ମଧ୍ୟ



କାତ୍ରୁଆ ।



ନୌକା ।

ଚଳେ । ନୌକା କିମ୍ବା ସୁଲୁପରେ ଗୋଟିଏ ବଡ଼ ଖୁଣ୍ଟ ଥାଏ ତାହାକୁ ମାସ୍ତୁଲ କହନ୍ତି । ସେହି ମାସ୍ତୁଲରେ ଗୋଟିଏ ବଡ଼ ମୋଟଲୁଗା କନା ଥାଏ, ତାହାକୁ ପାଲ କହନ୍ତି । ପାଲରେ ପବନ ଲାଗିଲେ ସୁଲୁପ ଚଳେ ।



ଜାହାଜ ।

ଜାହାଜ କଳଦ୍ୱାରା ଚଳେ, ପୁଣି ପବନର ଗତି ଅନୁସାରେ ପାଲ ମଧ୍ୟ ଟଣାଯାଏ । ଅଗ୍ନିବୋଟରେ କାତ, ଅଉଲ କିମ୍ବା ପାଲର ଆବଶ୍ୟକ ହୁଏ ନାହିଁ । ଏହା ରେଲଗାଡ଼ି ପରି ଜଳରେ ଚଳେ । ଅଗ୍ନିବୋଟ ଘଣ୍ଟାକେ ୧୦ । ୧୫ କ୍ରୋଶ ଯାଇ ପାରେ । ସୁଲୁପ ଭିତରେ ଯେପରି ପ୍ରାଣର ଭୟ ଅଛି, ଅଗ୍ନିବୋଟରେ ସେପରି ଭୟ ନାହିଁ ।

ଯେଉଁ ଯାନ ଆକାଶରେ ଚଳେ ତାହାକୁ ବ୍ୟୋମଯାନ କହନ୍ତି । ବିଲାତରେ ସାହେବମାନେ ବ୍ୟୋମଯାନରେ ଚଢ଼ି ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଯାନ୍ତି । ଗୋଟିଏ ବ୍ୟୋମଯାନରେ ୪ । ୫ ଜଣ ମନୁଷ୍ୟ ଯାଇ ପାରନ୍ତି । ବ୍ୟୋମଯାନ ତଳୁ ଉପରକୁ, ଉପରୁ ତଳକୁ ମନୁଷ୍ୟର ଇଚ୍ଛାନୁସାରେ ଯାଇ ଆସି ପାରେ । ମାତ୍ର ଉପରକୁ ଗଲେ ଯେଉଁ ଆଡ଼କୁ ପବନ ବହୁଥାଏ ସେହି ଆଡ଼କୁ ଯାଏ । ମନୁଷ୍ୟର ଇଚ୍ଛାନୁସାରେ ଅନ୍ୟ ଦିଗକୁ ଯାଇ ନ ପାରେ ।



ବ୍ୟୋମଯାନ ।

## ବ୍ୟବହାରିକ ଜ୍ଞାନ ।

### ଶାଲ, ବନାତ, ଆଲପକା, କସ୍ତୁରୀ, ଓ ଚାମର ।

ଯେତେ ପ୍ରକାର ପଶମୀ ଲୁଗା ଅଛି, ତହିଁ ମଧ୍ୟରେ ଶାଲର ମୂଲ୍ୟ ସବୁଠାରୁ ଅଧିକ ଅଟେ । ହିମାଳୟ ପ୍ରଦେଶରେ ଏକଜାତିର ଛାଗଳ ଅଛନ୍ତି, ସେମାନଙ୍କ ଲୋମରୁ ଶାଲ ପ୍ରସ୍ତୁତ ହୁଏ । କାଶ୍ମୀର ରାଜ୍ୟରେ ଯେପରି ଉତ୍କୃଷ୍ଟ ଶାଲ ପ୍ରସ୍ତୁତ ହୁଏ, ଅନ୍ୟ କୌଣସି ସ୍ଥାନରେ ସେପରି ହୁଏ ନାହିଁ । ପାର୍ଶ୍ୱରେ କାଶ୍ମୀର ଛାଗଳର ଚିତ୍ର ଦିଆ ହୋଇ ଅଛି । ମେଣ୍ଢା ପ୍ରଭୃତିଙ୍କ ଲୋମରୁ ବନାତ ପ୍ରସ୍ତୁତ ହୁଏ । ଓଟଲୋମରୁ ଏକପ୍ରକାର ଲୁଗା ପ୍ରସ୍ତୁତ ହୁଏ ତାହାକୁ ମଲିଦା କହନ୍ତି । ସ୍ପର୍ଶ କଲେ ମଲିଦା ଅତ୍ୟନ୍ତ କୋମଳ ବୋଧ ହୁଏ ।



ଦକ୍ଷିଣ-ଆମେରିକାରେ ଏକ ଜାତିର ପଶୁ ଅଛନ୍ତି ସେମାନଙ୍କୁ ଆଲପକା କହନ୍ତି । ଏହି ପଶୁ-ଲୋମରୁ ଯେଉଁ ଲୁଗା ପ୍ରସ୍ତୁତ ହୁଏ ତାହାକୁ ମଧ୍ୟ ଅଲପକା କହନ୍ତି । ଏହି ପଶୁମାନେ ମେଣ୍ଢାଠାରୁ ଉଚ୍ଚ ହୁଅନ୍ତି ନାହିଁ । ଏ ଦେଶରେ ଗଧ କିମ୍ବା ବଳଦ ଭଳି ଆଲପକା ଦକ୍ଷିଣ ଅମେରିକାର ଭାରବାହକ ପଶୁ ଅଟନ୍ତି । ଏମାନଙ୍କ ପିଠିରେ ବୋଝ ଦେଇ, ସେହି ଦେଶର ଲୋକମାନେ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ନେଇ ଯାନ୍ତି ।

ହିମାଳୟରେ ଏବଂ ତିବ୍ବତଦେଶରେ ଏକ ଜାତିର କ୍ଷୁଦ୍ର ମୃଗ ଅଛନ୍ତି, ସେମାନଙ୍କ ନାଭିସ୍ଥଳରୁ କସ୍ତୁରୀ ଜାତ ହୁଏ ବୋଲି ସେମାନଙ୍କୁ କସ୍ତୁରୀକାମୃଗ କହନ୍ତି । ପାର୍ଶ୍ୱରେ ଦେଖ କସ୍ତୁରିକାମୃଗର ଚିତ୍ର ଦିଆ ହୋଇଅଛି । କସ୍ତୁରିକାର ଓଷ୍ଠ ନିମ୍ନରେ ଦୁଇଖଣ୍ଡ କ୍ଷୁଦ୍ର ଅସ୍ଥି ଅଛି । ଏମାନେ ଏହି ଅସ୍ଥି ସାହାଯ୍ୟରେ ବୃକ୍ଷର ମୂଳ ପ୍ରଭୃତି ଖୋଳି ଖାନ୍ତି । ମନୁଷ୍ୟମାନେ କସ୍ତୁରୀ ସଂଗ୍ରହ କରିବା ସକାଶେ ପ୍ରତିବର୍ଷ ସହସ୍ର କସ୍ତୁରୀକାମୃଗ ବଧ କରନ୍ତି ।



ତିବ୍ବତ ଏବଂ ହିମାଳୟ ପ୍ରଦେଶରେ ଏକ ଜାତିର ପଶୁ ଅଛନ୍ତି ସେମାନଙ୍କୁ ଚମରୀଗୋ



କହନ୍ତି । ସେହି ଦେଶର ଲୋକମାନେ ଏହି ପଶୁକୁ ପାଳନ କରନ୍ତି । ଏ ଦେ-ଶର ଗୋରୁ ପରି, ତିବ୍ବତଦେଶର ଲୋକମାନଙ୍କ ଚମରୀ ଗୋ ଅତ୍ୟନ୍ତ ଉପକାରୀ ଜନ୍ତୁ ଅଟେ । ଏମାନେ ଏଦ୍ୱାର ଦୁଗ୍ଧପାନ, ମାଂସଭକ୍ଷଣ, ଲୋମରୁ ବସ୍ତ୍ର ପ୍ରସ୍ତୁତ କରନ୍ତି । ଚମରୀ ଗୋ ସେହି ଦେଶର ଭାରବାହକ ଜନ୍ତୁ ଅଟେ ଏମାନଙ୍କ ପୁଚ୍ଛର ଅଗ୍ରଭାଗରୁ ଚାମର ହୁଏ ।

ସମାପ୍ତ ।

---

କଟକ ଏଭଞ୍ଜେଲିକାଲ ପ୍ରେସ—ଶେଖ୍ ନଛିର ମହମ୍ମଦ କର୍ତ୍ତୃକ ମୁଦ୍ରିତ । ୧୯୧୯